# କୋଣାର୍କେ ଉଷା ।

## ବଙ୍ଗଳାଶ୍ରୀ ।

"କରିବରକର ମର୍ଦ୍ଦନ ଅନ୍ତର" ସ୍ୱରରେ ।

ସୁପ୍ତରୁଦ୍ଧାହିନ, ସୁଧାଂଶୁମାଳିନ
ଉଷେ, ଚନ୍ଦ୍ର-ନନ୍ଦନେ
କି ମୋହିନୀ ଶକ୍ତି ଧର କହ ସତ ?
ଏଥି ତବ ଆଗମନେ । ୧ ।

ନିଦ୍ରିତ ଜଗତ ପଲକେ ଜାଗ୍ରତ
ହେଲା ଶୋଭା ନିକେତନ
ଲାବଣ୍ୟ ମାଧୁରୀ ଦୃଷ୍ଟେ ଦଣ୍ଡେ ପୂରି
ହେଲା ମନ ଉଚ୍ଚାଟନ । ୨ ।

ଉଠାଇ ମୁକୁଟ ରଟିଲା କୁକ୍କୁଟ
ଅହା କେଡ଼େ ସୁତାନରେ
କାକ ଶୁକ ପିକ ଡାହୁକ ଶାଳିକ
ପାଳିଆ ହୋଇଲେ ଖରେ । ୩ ।

ଗୁଞ୍ଜରିଲା ଅଳି ଉଠିଲା କାକଳି-
ଲହରୀ ତ ସୁଲଳିତ ।
ବୀଣାର ଝଙ୍କାର ନୁହେ ସମ ତାର
ଆନ ନ ଘେନଇ ଚିତ୍ତ । ୪ ।

ରୂପ ଗରବିଣୀ ସୁଗନ୍ଧ ବାହିନୀ
ଯାଉ ଫୁଟି କମଳିନୀ

## ୨ କୋଣାର୍କେ ଉଷା ।

ଜବା ଶେଫାଳିକା ଚମ୍ପକ ମଲ୍ଲିକା
ଆନ୍ଦ ଜଗତମୋହନେ । ୫ ।
ପୁଲକିତ ମନେ ସହାସ୍ୟ ବଦନେ
ରମ୍ଭା ଉରୁବଶୀ ପରି
ନୃତ୍ୟ କଲେ ରଙ୍ଗେ ଗନ୍ଧର୍ବ ସଙ୍ଗେ
ଜନ ମନ ମୁଗ୍ଧ କରି । ୬ ।
ଗନ୍ଧର୍ବ ପଢ଼ିଏ ଭୃଙ୍ଗଗଣ ଗାଏ
ଗୀତ କେତେ ମନୋହର
ହିନ୍ଦବ ବାଜିବ ଧରାରେ ଉଭବ
ଲାଗି ଉଷା ଦବ୍ୟ କର । ୭ ।
ଏହା ଦରଶନ ପାଁଇ କି ସୁମନ
ଗାଁଣି ନିଦ୍ରା ପରିହରି ।
ଶଙ୍ଖ ଘଣ୍ଟା ନାଦ ଛଳେ ଧନ୍ୟବାଦ
ଦେଲେ ଏକ ତାନ ଧରି ? । ୮ ।
ଏହାପରି ମୂର୍ତ୍ତି ଦିନ୍ ହୁଏ ସତ୍ତି
ତବ ଶୁଭ ଅଗମନେ
ଶୀତେ କି ବସନ୍ତେ ବରଷା ଶରଦେ
ପୁରେ ବନେ ଉପବନେ । ୯ ।
ପ୍ରସନ୍ନ ବଦନ କରଇ ଧାରଣ
ଚରାଚର ପୁଲକିତ
ଅସ୍ତମିତ ରବି ଧରି ଗୁରୁ ଛବି
ଉଲ୍ଲାସଇ ଧରା ଚିତ୍ତ ।୧୦।

ହେ ଗୃହବାସିନ ତବ ସେ ମୋହିନୀ
ଶକ୍ତି ଲାଗି ନତ ପ୍ରଣତି
କପାଇଁ ଉତ୍କଳ ବର୍ଦ୍ଧନ ଉଜ୍ଜ୍ୱଳ
ହେଉ ନାହିଁ କହ ସତ । ୧୧ ।

ତୁମ୍ଭେ ବିଶାଳାକ୍ଷୀ ପୁରାତନ ସାକ୍ଷୀ
କାଲେ କାଲେ ବହୁଜତ
ଉତ୍ଥାନ ପତନ କଲଣି ଦର୍ଶନ
କେତେ କେତେ ଅଗଣିତ । ୧୨ ।

ଦେଖ ନିରବଧି ପରଖା ଜଳଧି
ଗର୍ଜେ ପ୍ରାଚୀ କୂଳରେ
ବେଢ଼ିଛି ପ୍ରାକାର ଅର୍ଦ୍ଧଚନ୍ଦ୍ରାକାର
ଗିରିମାଳ ପଶ୍ଚିମରେ । ୧୩ ।

ସେହି ମହାନଦୀ ବିଲଙ୍ଗ ସାଳନ୍ଦୀ
ବ୍ରାହ୍ମଣୀ ସୁବର୍ଣ୍ଣରେଖା
ପୂର୍ବେ ବକ୍ଷଜତ ଏବେ ପ୍ରବାହିତ
ବୈତରଣୀ ତୀର୍ଥେ ଲେଖା । ୧୪ ।

ଧୂର୍ଜଟି ନିବାସ ଗିରି କପିଳାସ
ବର୍ତ୍ତମାନ ସେହିପରି
ବସନ୍ତେ ଚଳକା ନୀଳାମ୍ବୁ ଦୀର୍ଘିକା
ଜନ ମନ ମୁଗ୍ଧ କରି । ୧୫ ।

ଅଛି ସେହିପରି ଗଡ଼ କେନ୍ଦୁଝର
ବୈତରଣୀ ଜନ୍ମସ୍ଥାନ

ଧର୍ ଶିଖୀଧ୍ୱଜ ସେ ମୟୂରଭଞ୍ଜ
ପୃଷ୍ଠପରେ ବିଦ୍ୟମାନ । ୧୬ ।
ଅଭ୍ର ସ୍ୱର୍ଣ୍ଣମାଳି ପ୍ରେକ୍ଷି ଢେଙ୍କାନାଳ
ଗଡ଼ଜାତେ ଧନମଣି
ହିଙ୍ଗୁଳାଙ୍କ ପୀଠ ତାଳଚେର ଗଡ଼
ପଥରକୋଇଲା ଖଣି । ୧୭ ।
ନୀଳ କଳେବର ମୁଗୁନି ପଥର
ଯେବେ ଗଡ଼ ନୀଳଗିରି ।
ବାଙ୍କୀ ଅଠଗଡ଼ ବଉଦ ନୟାଗଡ଼
ଅରଣ୍ୟେ ବିକାଶି ଶ୍ରୀ । ୧୮ ।
ନୂଆଗଡ଼ ସମ ଭୂମି ଅନୁପମ
ରତିଗିରଥ ଖଣ୍ଡପଡ଼ା
ପାଶେ ଦଶପଲ୍ଲା ଦକ୍ଷିଣେ ପାରଳା
ଲହଡ଼ା ପାଶେ ବାମଡ଼ା । ୧୯ ।
ନୁହେ ଅଛି ବଡ଼ ସେ ହିନ୍ଦୋଳ ଗଡ଼
ପାଶେ ନରସିଂହପୁର ।
ସମୁଦ୍ର ପରଖା ଉପରେ କନକା
ଆଳ ନୁହେ ଅଛି ଦୂର । ୨୦ ।
ସବେ ବଶୀକୃତ ନୁହଇ ଉଦ୍ଧତ
କପାଇଁ ସୌଭାଗ୍ୟ ରବ ।
ବନ୍ଦରେ ପାଷାଣ ନର ହତଜ୍ଞାନ
ଦେଖିଲେ ଉତ୍କଳ ଛବ । ୨୧ ।

## କୋଣାର୍କେ ଉର୍ଷୀ ।

ଦଶରଥ ଯେସନ            ଅଯୋଧ୍ୟା ଭବନ
ରାମ କରୁଁ ବନବାସ ।
ତବା ବୃନ୍ଦାବନ            ଦେବକୀ ନନ୍ଦନ
ଯାଉଁ ପିତା ମାତା ପାଶ । ୨୨ ।
କର୍‌-ସମର୍ଦ୍ଦିତା            ଅର୍ଦ୍ଧ ବିକଶିତା
ପ୍ରଭୁଲ ଗୋଲାପ କଳୀ
ଶୋଭା ନକେତନ            ନ ପାଇ ଯତନ
ଯାଉଛୁ କ ଅଛା ଝଡ଼ି ? । ୨୩ ।
ଅହୋ ଦନୁ ଦନୁ            ଯତନ ବଳାନୁ
ଅର୍କକ୍ଷେତ୍ରେ ଯାଜପୁରେ
ଭାରତେ ପବିତ୍ର            ଜଗନ୍ନାଥ କ୍ଷେତ୍ର
ଅଥବା ଭୁବନେଶ୍ୱରେ ।୨୪।
କେତେ ମନୋଲୋଭା            କାରୁକାର୍ଯ୍ୟଶୋଭା
ହେଉଛୁ ରେ ଛାରଖାର
ଦେଖିଲେ ବଚନ            ନ ସ୍ଫୁରେ ନୟନ
ତ୍ୟଜେ ଅଶ୍ରୁ ଅନବାର । ୨୫ ।
ଶଇବାଳାବୃତ            କାହିଁ ସ୍ଥାନ ଚ୍ୟୁତ
ମୂର୍ତ୍ତି କେତେ ମନୋହର
ଦୁଃଖ ବିମୋଚନ            ପାଇଁ କ ବଚନ
ଭାସିବାକୁ ତତ୍ପର ? । ୨୬ ।
କାହାର ସନ୍ଧୁର            କାହାର ବା କର
ପଡ଼ିବାକୁ ଅଛା ଖସି

ନାୟିକା ଶ୍ରବଣ ଦେବାରୁ ଛେଦନ
କାନ୍ଦୁଛନ୍ତି କ ଦୁଃଖେ ବସି ? ।୨୭।
କେତେ ବା ବେଦନ ଜାଣେ ଅକାରଣ
ଦେଲେଣି ନୟନଅଗ୍ନି
ଧରଣୀ ଶୟନ କଲେଣି ବରଣ
କେତେ ବା ନ ସରୁଁ ଦନ ।୨୮।
କାହାର ବା ଶିର ହସ୍ତର ଶରୀର
ସ୍ଥିତେ ହସି ହସି ଭୂଷେ
ପାଷାଣେ ନିର୍ମିତ ତଥାପି ଚର୍ବିତ
ହେଲୁଁ ଦେଖ କାଳଗ୍ରାସେ ।୨୯।
ଅଭିମାନ କର ମନ ଦୂର କର
ଆମ୍ଭ ଏହ ଦଶା ଧାପି
ରୂପ ଯୌବନ ନୁହେଁ କବାଚନ
ପାଷାଣୁଁ ଅଧିକ ସ୍ଥାୟୀ । ୩୦ ।
ଧନ୍ୟ ସେ ଭୂଜାଣି ଯାହାଙ୍କୁ ଯେ ଅଛି
ଶିଳାରେ ଜୀବଢଠାଣି
ଅତି ମନୋରମ କାର୍ଯ୍ୟ ଅନୁପମ
ବର୍ଣ୍ଣିପାରେ କାଣାପାଣି ।୩୧।
କାହିଁ ହସ ହସ କାହିଁ ବା ବିରସ
ପୂର୍ବ୍ବସ୍ମର କରି ନାଥ୍ଣ ।
କାହିଁ ହର କଷ୍ଟ ନାନା ଭଙ୍ଗି ଧର
ଜନମନ ମୁଗ୍ଧକାରୀ ୩୨ ।

କାହିଁ ମଲ୍ଲ ମୂର୍ତ୍ତି  ଦେଖାଉଛି ସ୍ଫୂର୍ତ୍ତି
ଯେସନେ ଦେବସେନା-ପତି ।
କାହିଁ ଧନୁର୍ଦ୍ଧର  ନିକ୍ଷେପୁଛି ଶର
ଅବହେଳେ ଅରି ପ୍ରତି । ୩୩ ।
କାହିଁ ସ୍ୱର୍ଣ୍ଣଶିର  ସୁମନମଣ୍ଡିତ
ଗୃହୁ ତରୁ ଲତାପୁଞ୍ଜ
କାହିଁ ବିମ୍ବାଧରୀ  ବୀଣା କରେ ଧରି
ମଣ୍ଡେ ମନୋରମ କୁଞ୍ଜ । ୩୪ ।
ପ୍ରେମିକ ଆଗମନ  ଦେଖି ସମ୍ଭାଷଣ
କରିବାକୁ ଅଭିଳାଷୀ
ହୋଇ ଜବା ବୀଣା  ବାଦନ ପ୍ରବୀଣା
ବନ୍ଦକନ୍ୟା ମଦାଳସୀ । ୩୫ ।
ଶିଳା ବିନିର୍ମିତ  ନ ହେବଇ ଚିତ୍ତ
ଆହା କି ଅପୂର୍ବ ଶିଳ୍ପ
ନଜରୁ ପାଷାଣ  ବୋଲି ହୁଏ ଜ୍ଞାନ
ମନ୍ତ୍ର-ମୁଗ୍ଧ ହେଲା ପରି । ୩୬ ।
ଆହା କି ମଞ୍ଜୁଳ  ନାଶା ତିଳଫୁଲ
ମୁଖ ଅରବିନ୍ଦ ଶୋଭି
ଖଞ୍ଜନ ଗଞ୍ଜନ  ବିଶାଳ ନୟନ
ଆହା କେଡ଼େ ମନୋଲୋଭି । ୩୭ ।
ଯେଉଁଠାରେ ଯେମନ୍ତ  ଭଙ୍ଗିମା ତେମନ୍ତ
ଦିଶଇ ଜୀବନ୍ତ ରୂପରି

ଲବଣେ ପିଭୁଲା ହେଲେ ହେବ ଭୁଲା
ଅନ୍ନ କେହୁ ନୁହେ ସର । ୩୮ ।
ନ ଉଚ୍ଚାର ବାଣୀ କହୁଛୁ କାହାଣି
ଉତ୍କଳର ପୂର୍ବତନ ।
ସେବେ ଏ ଦୁଃଖିନୀ ଭାରତନନ୍ଦନୀ
ଥିଲା ସୁଖ ନିକେତନ । ୩୯ ।
ପୁଲକିତ ମନେ ଉତ୍କଳ ନନ୍ଦନେ
ଘେନ ଜୟ-ବୈଜୟନ୍ତୀ
କରୁଥିଲେ ସଜ ଯେବେ ଅଶ୍ୱ ଗଜ
ପଦାତିକ ପନ୍ତି ପନ୍ତି । ୪୦ ।
ମାତ ବୀରମଦେ ସର୍ବେ ମହାନନ୍ଦେ
ପିଟି ଯେବେ ଜୟ ଢଙ୍କା ।
ଭୁଷି ବେଶ ସ୍କନେ ଅରବୃନ୍ଦ ମନେ
ଉପୁଜାଉଥିଲେ ଶଙ୍କା । ୪୧ ।
ଥିଲେ ବଡ଼ ସାନ ଏକ ମନ ପ୍ରାଣ
ଜାତୀୟ ବିଷୟ ସ୍ମର
ଭୁଲି ଆତ୍ମଜ୍ଞାନ ମାନ ଅପମାନ
କାଷ୍ଠ ପୁତୁଳିକା ପର । ୪୨ ।
ଗୁଳତ ସକଳେ ଜାତୀୟ ମଙ୍ଗଳେ
ଅତି ପୁଲକିତ ମନେ
ଧାଉଁଥିଲେ ରଙ୍ଗେ ଯେପର ପତଙ୍ଗେ
ଅଗ୍ନି ଶିଖା ଦରଶନେ । ୪୩ ।

ନିଦାଘ ତପନ ବରଷା ପବନ
କରୁଥିଲେ ହେୟ ଜ୍ଞାନ
ଗିରି ନଦୀ ଝର ଲଙ୍ଘନେ ତତ୍ପର
ରକ୍ଷିବାକୁ ଜାତି ତ୍ରାଣ । ୪୪ ।

ଉଦ୍ଦେଶ୍ୟ ସାଧନ ନିମନ୍ତେ ଜୀବନ
ଅକାତରେ ବିସର୍ଜନ
କରୁଥିଲେ ରଣେ ପୁଲକିତ ମନେ
ସ୍ୱର୍ଗ ସୁଖ ଉପାର୍ଜନ । ୪୫ ।

ଧରି ଅନୁପମ ମୃଗେନ୍ଦ୍ର ବିକ୍ରମ
ଯଯାତି କେଶରୀ ସଙ୍ଗେ
ଯେବେ ତୋଷମନେ ଅରି ନିର୍ଯ୍ୟାତନେ
ମାତିଥିଲେ ରଣରଙ୍ଗେ । ୪୬ ।

ଯେବେ କାଞ୍ଚିପୁରେ ଦକ୍ଷିଣେ ସୁଦୂରେ
ତଟ ଗୋଦାବରୀ କୃଷ୍ଣା
ଜିଣି ଗଣପତି ପୋତି ବୈଜୟନ୍ତ
ନିବାଇଲେ ଜୟ ତୃଷ୍ଣା । ୪୭ ।

ପୁରୁଷ ଉତ୍ତମ ସେ ପୁରୁଷୋତ୍ତମ
ବିଷ୍ଣୁଭକ୍ତ ଧନ୍ୱବର
କାଞ୍ଚିରାଜ ଗର୍ବ ହେଲେ କଲା ଖର୍ବ
ଯେବେ ବୀର ଧନୁର୍ଦ୍ଧର । ୪୮ ।

କାବେରୀ ତ୍ରିବେଣୀ ସ୍ରୋତସ୍ୱତୀ ବେଣୀ
ମଧ୍ୟେ ଦେଲ ଫଁରକାଣ୍ଡ

ଯମନ୍ତୁଚପର ଦବସ ସବସ୍ତ
ଯୋଦ୍ଧାମଣ୍ଡୁଥିଲେ ଦାଣ୍ଡ । ୪୯ ।
ଯେଉଁଠାରେ କଟକ- ମାନଙ୍କ ଛଟକ
ଦେଖି ଜଗନ୍ବାସୀ ଗଣ
ଚକିତ ସ୍ତମ୍ଭିତ କେତେ ବା ଶଙ୍କିତ
କେତେ ପୁଲକିତ ମନ । ୫୦ ।
ଅତି ପୁରାତନ ବିରଜା-ଭବନ
ମନୋହର ଉପବନେ
ଯେବେ ଯାଜପୁରେ ଅଣିଚର୍ମ କରେ
ବୁଲୁଥିଲେ ବୀରଗଣେ । ୫୧ ।
ରୂପେ ଅନୁପମା ଅତି ମନୋରମା
ଯେକାଳେ ଅମରାବତୀ
କୃଷ୍ଣାନଦୀ ତୀରେ ମଣ୍ଡୁଥିଲେ ବୀରେ
ଶୌର୍ଯ୍ୟେ ଯେସନେ ଲକ୍ଷପତି । ୫୨ ।
ଯେବେ ପାଦାଙ୍ଗିଅ ନଥର ଛତଥ
କାରୁକାର୍ଯ୍ୟ ସୁଶୋଭିତା
ତ୍ରିଦବ ସମ୍ପତ୍ତି ଶଚୀ ଶଚୀପତି *
ଯେନ ଅତି ପୁଲକିତା । ୫୩ ।
ଯେବେ ଚତୁର୍ଦ୍ଦିଗ ପ୍ରକାଣ୍ଡ ପ୍ରାକାର
ମହାନଦୀ ବାମତୀରେ
ସଜିତ ମଣ୍ଡିତ ବର୍ମବିଭୂଷିତ
ଶ୍ରୀମନ୍ତକଳେବର ବୀରେ । ୫୪ ।

* ଛତଥରେ ବର୍ତ୍ତମାନ ସ୍ତ୍ରୀ ଇନ୍ଦ୍ର ଇନ୍ଦ୍ରାଣୀଙ୍କର ଭଗ୍ନ ମୂର୍ତ୍ତିମାନ ବର୍ତ୍ତମାନ ଅଛି ।

ଯେବେ ବାରବାଟୀ ଦୁର୍ଗ ପରପାଶି
ଶୋଭୁଥିଲେ ଦରଶନେ
ଅବାରିତ-ଗତି ଚଡ଼େଇପିଲା ସତି
ଅତି ପୁଲକିତ ମନେ । ୫୬ ।

ମନ୍ଥରଗାମିନୀ ହୋଇ ସୁହାସିନୀ
ଚୁମ୍ବି ହେଉଥିଲା ଯେବେ
ଅର୍ଦ୍ଧଚନ୍ଦ୍ରାକାର ମୁକୁର ଉଦାର
ପ୍ରସାର ବାହୁବନ୍ଧେ । ୫୭ ।

ଉକ୍ତଳକୁ ଶୋଭା ଦୁର୍ଗ ମନୋଲୋଭା
ଯେପରି ହିମାଳୟ ଗିରି
ସିନ୍ଧୁ ଯଜ୍ଞସୂତ୍ର ସିନ୍ଧୁ ବ୍ରହ୍ମପୁତ୍ର
ଜନମନ ମୁଗ୍ଧକାରୀ । ୫୭ ।

ଯେଉଁନେ କେଶରୀ ଉତ୍ପାଦନ କରି
ପ୍ରୀତ ଚିତ୍ତ ଯୋଦ୍ଧାଗଣ
ଇନ୍ଦ୍ରଜିତ ପରି ନାନାଅସ୍ତ୍ର ଧରି
କରୁଥିଲେ ବିଚରଣ । ୫୮ ।

ବିଳାସ ଭବନ ରମ୍ୟ ଉପବନ
ମଣ୍ଡନେ ନ ଦେଇ ମନ
ମନ୍ଦିର ଗଠନ ତଡ଼ାଗ ଖନନ
କରୁଥିଲେ ଗୁଣିଗଣ । ୫୯ ।

ଯେବେ ବନ୍ଦିଗଣେ ଦେବା ଆଗମନେ
ଗାଉଥିଲେ ଗୀତ

ଶାନ୍ତ ସୁସ୍ଥାନରେ    ବୀଣାଜଣାସ୍ୱରେ
"କରୁଥିଲେ ଜାଗରଣ । ୬୦ ।
ଯେକାଳେ ବ୍ରାହ୍ମଣେ    ଶାସନେ ଶାସନେ
ଯେସନ୍ତେ ପୋଷ୍ୟପୁତ୍ର ଗଣ ।
ଅତି ସୁଖସ୍ୱନେ    ବେଦ ଉଚ୍ଚାରଣେ
କାଟୁଥିଲେ ସୁଭଦନ । ୬୦ ।
ଯେକାଳେ କବାଣୀ    ହୃରୁ ଶିଳା ଥଣି
ଅଭ୍ରଭେଦ ଚୂଡ଼ାଧାରୀ ।
ମନ୍ଦିର ନିକର    ମଣ୍ଡନେ ଉପର
ଜନମନ ମୁଗ୍ଧକାରୀ । ୬୧ ।
ଭାବେ "ବୀଣାପାଣୀ"    ଏ ସବୁ କାହାଣି
କହୁ କହୁ ବାକ୍ୟ ହୀନ
ହେଲୁଣି, ଉତ୍କଳ    ବଦନ ଉଜ୍ଜ୍ୱଳ
ହେଉ ନାହିଁ ଶୁଭଦନ । ୬୨ ।
ହାୟ ପିତୃଗଣେ    କ୍ଲେଶେ ଯତନେ
ରଖିଗଲେ ଯେଉଁ ଧନ ।
ସବୁ ଅକାରଣ    ଉତ୍କଳ ନନ୍ଦନ
କରିବାରୁ ଅଯତନ । ୬୩ ।
ଭାବୁଛନ୍ତି ମନେ    ନନ୍ଦନକାନନେ
ତାଙ୍କ ରମ୍ୟ ଉପବନ ।
ବିଳାସ ଭବନ    କରିବେ ଯତନ
କରି ନାମ ସଙ୍କୀର୍ତ୍ତନ । ୬୪ ।

ନ ଦେଖନ୍ତୁ ଭ୍ରମ ଦଂଶା ଅସ୍ପୃଶ୍ୟ
ଲଭିବେ ସେ ସର୍ବୁଦନେ ।°
ଯେଣୁ ଏହୁମାଢ଼ ସନ୍ତାନ ସନ୍ତତ
ଶିଖୁଛନ୍ତୁ ବନେଦନେ । ୭୫ ।
ମୃଗେନ୍ଦ୍ର ସନ୍ତାନ ଶୃଗାଲ ସମାନ
ଅହୋ କେଉଁ ଅଧୋଗତ ।
ନୋହୁଲେ ସଦସ୍ୟ ବଧି ନରଦସ୍ୟୁ
ଦଣ୍ଡ ନାହିଁ ଅନ୍ୟଗତ । ୭୬ ।
ସରଲାଣି ତପ ଜୀବନ ପ୍ରଦୀପ
ହୋଇଲାଣି ନର୍ବାପିତ ।
ଦଶେ ଦଶବୀର ଘୋର ଅନ୍ଧକାର
ଧ୍ରୁବ ତାରା ଅସ୍ତମିତ । ୭୭ ।
ଶୋକ ସିନ୍ଧୁନୀରେ ନଗ୍ନଶା ତମିରେ
ନ ଫୁଟଇ ଆଉ ବାଣୀ ।
କନ୍ଦୁକନ୍ଦୁ ଦୁଃଖେ ଅଛା ଅଧୋମୁଖେ
ପଡ଼ିଯାଏ " ବୀଣାପାଣି " । ୭୮ ।
ଅତୀତର ସାକ୍ଷୀ ଉଷେ ବଶାଳାକ୍ଷି
କହିଁ ଏହା ଦରଶନେ ।
ଅତୀତ ଗୌରବ ଅତୀତ ବଭବ
ପଡ଼ୁ ନାହିଁ କାହ୍ନାମନେ । ୭୯ ।
ବଦନ ଫେରାଇ କେହୁ ଦେଖୁ ନାହିଁ
କାଲଚକ୍ରପଦାଙ୍କିତ ।

ଉତ୍କଳ ବରଣେ ହରଷ ବଚନେ
ଉତ୍କଳର ଇତିବୃତ୍ତ । ୭୦ ।
ଏବେ ପରାଧୀନ ବଳବୀର୍ଯ୍ୟହୀନ
ସଦା ପରମୁଖାପେକ୍ଷୀ ।
ଉଦ୍ୟମ ରହିତ ଧୂଳି ଧୂସରିତ
ଉତ୍କଳ-ନନ୍ଦନେ ଦେଖି । ୭୧ ।
କି ଭାଳନ୍ତି ମନେ ଅମରଭବନେ
ଦିବ୍ୟସିଂହାସନେ ବସି ।
ଯଯାତି କେଶରୀ, ନୃପ, ଲଲାଟେନ୍ଦୁ,
ମର୍କଟ କେଶରୀ ବଂଶୀ । ୭୨ ।
କି କହେ ଚୋଡ଼ଙ୍ଗ କି ଭାବେ ଅନଙ୍ଗ
ଭୀମଦେବ ନୃପମଣି
କେତେ ଶୋକ ତାପ ଭୋଗଇ ପ୍ରତାପ
ଏ ଦୁଃଖ କାହାଣି ଶୁଣି ? । ୭୩ ।
କହ, ସୁହାସିନି ତ୍ରିପୁରଗାମିନି
ଉଷେ ଶ୍ରୁତଚନ୍ଦ୍ରାନନେ ,
ପରମ ପବିତ୍ର ସ୍ଥାପିଲେ ଯେ କ୍ଷେତ୍ର
ନ ପଡ଼େ କି ତାଙ୍କ ମନେ ? । ୭୪ ।
ଯାତ୍ରିଗଣ ଆସି ତହିଁ ପାପରାଶି
ରଖି ଯାଉଁ କାଳେ କାଳେ
ଉତ୍କଳ ଗଗନ ଘୋର ଧୂମାଛନ୍ନ
ହେଉଛି ସେ ପାପାନଳେ । ୭୫ ।

ଢବା ନବଗ୍ରହ ସୁନ୍ଦର ବିଗ୍ରହ
ହୋଇବାରୁ ସ୍ଥାନଚ୍ୟୁତ
ଅନ୍ଧାର ଭୁବନେ, ଉତ୍କଳ ନନ୍ଦନେ
ଗାଢ଼ ନିଦ୍ରା ଅଭିଭୂତ ? । ୭୬ ।

ତ୍ରିପାପନାଶିନ, ଆଲୋକ ଦାୟିନ
ଊଷେ ବିଶ୍ୱବିମୋହନ,
ବାରେ ଦୟା ବହି ଦେବି, ଦୟାମୟି
ଦେଇ ମନ୍ତ୍ର ସଞ୍ଜୀବନୀ । ୭୭ ।

କର ଜାଗରିତ, ନିଦ୍ରାବିମୋହିତ
ଉତ୍କଳ-ନନ୍ଦନଗଣେ
ଫିଟାଇ ନୟନ କରନ୍ତୁ ଦର୍ଶନ
ସର୍ବେ ପୁଲକିତ ମନେ । ୭୮ ।

ଟେକିଲେଣି ମଥା ଶୁଣି ପୂର୍ବକଥା
ଦୀର୍ଘନିଦ୍ରା ପରିହରି
ପ୍ରାଚୀନ ମିଶର ଇଟାଲି ସୁନ୍ଦର
ଗ୍ରୀସ ବଳବୀର୍ଯ୍ୟ ଧରି । ୭୯ ।

ଅନ୍ଧାରୁ ବାହାରୁ ଧୂମକେତୁପରି
କେତେ କେତେ ନବଜାତି
କରନ୍ତୁ ଚକିତ ସ୍ତମ୍ଭିତ ବିସ୍ମିତ
ଦେଖାଇ ପ୍ରଭୁତ୍ୱ କାନ୍ତି । ୮୦ ।

ପ୍ରକୃତିରୁ ଦାସୀ କରଣେ ପ୍ରୟାସୀ
ମନ୍ଥି ହେଲେ ମହୋଦଧି

ବନ୍ଧ କର ଜଳ ବ୍ଭୂ୍ୟତ ଅନଳ
କାଟି ଗିର ବାନ୍ଧ ନଦୀ । ୮୧ ।
ଫେଡ଼ିବାକୁ ଦଶା କେବଳ ଭରସା
ବ୍ରହ୍ମିସକେଶରୀ କର
ଯାହା କୃପାବଳେ ହୋଇଲେଣି ହେଲେ
କେତେ ଜାତ ଅଗ୍ରସର । ୮୨ ।
ହେଲେଣି ଉନ୍ନିତ ତା ମନ୍ତ୍ରେ ଦୀକ୍ଷିତ
ଅଷ୍ଟ୍ରେଲୟା ଅଫେରକା
ବନ୍ୟପଶୁ ସ୍ଥାନ, ଅସଭ୍ୟ ଜାପାନ
ନବଯୁବା ଅମେରିକା । ୮୩ ।
ଏହା ଦରଶନେ ହେବ କାହାମନେ
ସାଧୁଭାବ ଜାଗରତ ?
ନୂହଇ ପରତେ; ହେବ କ ହେ ସତେ
ଦୁଃଖ ନଶୀ ଝଡୁରତ ? । ୮୪ ।
ନିଦ୍ରା ପରହର ବଲ୍ଲୀର୍ଯ୍ୟ ଧର
ଉତ୍ସାହ-ଉଚ୍ଛୁଙ୍ଖନେତ୍ରେ
ଉଜ୍ଜ୍ୱଳ ନୟନେ ପ୍ରଫୁଲ୍ଲ ବଦନେ
ପଶିବେ କ କାର୍ଯ୍ୟ କ୍ଷେତ୍ରେ । ୮୫ ।
ଅନ୍ଧାରେ ଯେସନ ଉଷା ଆଗମନ
ଦରଶନେ ଚରାଚର,
ଉନ୍ନତ ମାର୍ଗରେ ଅଭ୍ରାନ୍ତ ପଦରେ
ହୋଇବେ କ ଅଗ୍ରସର । ୮୬ ।

ଦ୍ରବିଡ଼ କେଶରୀ  ନୀତି ଅନୁସରି
ଅର୍ଥଧନେ କର ଯତ୍ନ
ଦେବେ କହେ ମନ  ଯତ୍ନେ ଉପାର୍ଜନ
ହୁଏ ନବନବ ରତ୍ନ ।୮୭।

ଲାଗି ପ୍ରାଣପଣ  ଯେସନେ ସୁରଗଣ
କ୍ଷୀରସିନ୍ଧୁ ମନ୍ଥନରେ *
ସିଦ୍ଧିମନ୍ତ୍ର ଗୁଣି  ଲଭିବେ କି ପୁଣି
ଶୁଭ୍ର ଯଶ ଶଶଧରେ ।୮୮।

ପଶି ସେ ଦୁର୍ଗମ  ବରୁଣଭୁବନ
ଯତନେ ପ୍ରସନ୍ନ କର
କୋପେ ଲୁକ୍କାୟିତା  ବାରିଧି ଦୁହିତା
ଆଣିବେ କି ବାରେ ବର ।୮୯।

ଉଚ୍ଚୈଃଶ୍ରବା ସମ  ବାଜି ଅନୁପମ
ସୁଖେ କର ଅନ୍ୱେଷଣ
ଐରାବତ ପର  ଯୂଥ ଯୂଥ କରି,
କରିବେ କି ବିଚରଣ ? ।୯୦।

ଜନ୍ମି ପାରିଜାତ  ମାଳା ଅବଦାତ
ଲମ୍ବାଇଣ ଗଳଦେଶେ
ଶଙ୍ଖା ଚଦ୍ୱଟାଇ  ଦଗ ମର୍ଦ୍ଦକାଇ
ବୁଲିବେ କି ଦେଶେ ଦେଶେ ।୯୧।

* ସମୁଦ୍ର ମନ୍ଥନକାଳେ ଚନ୍ଦ୍ର, ଲକ୍ଷ୍ମୀ, ଉଚ୍ଚୈଃଶ୍ରବା, ଐରାବତ, ଧନ୍ୱନ୍ତରୀ ପାରିଜାତ ଓ ଅମୃତ ଆଦି ହୋଇଥିଲା; କ୍ଷୀରସିନ୍ଧୁ ମନ୍ଥିଲେ ସେହିମାନଙ୍କ ଲାଭ ହେବ ।

ଜାତୀୟ ଜୀବନ ଅମୃତ ସେଚନ
କରି ତେଜୋମୟ ତନୁ
ହେବେ କି ସ୍ୱଜନ ମହା ଧନୁର୍ଦ୍ଧର
ଯେସନ ଅବଧସୂନୁ ? । ୧୨ ।

ଧର୍ମରେ ହିଦବ ଦୁର୍ଲଭ ବଇଭବ
ଭୋଗରେ ବଳାଇ ମତ
ଜାତୀୟ ଏକତା ଜାତୀୟ ମମତା
ବୁଝିବେ କି ସଦଗତ । ୧୩ ।

ହେବ ପ୍ରବାହିତ କି ଉଷ୍ଣ ଶୋଣିତ
ଧମନୀରେ ଧମଣୀରେ
ପୁରୁଷ ଉଚିତ କାର୍ଯ୍ୟ ସମ୍ପାଦିତ
କରିବେ କି ଅବନୀରେ ? । ୧୪ ।

କର ଶ୍ରୋତସ୍ୱତୀ ଗଣ ଭୂଷଗତ
ନଗଣିର ଅବନତ
ବିଦ୍ୟା ବୁଦ୍ଧି ବଳେ ଅବନୀମଣ୍ଡଳେ
ଦଶିବେ କି ସମୁନ୍ନତ । ୧୫ ।

ଏ ସକଳ ଆଶା କେବଳ ଦୁରାଶା
ଆକାଶ କୁସୁମ ପରି
ଥିବ ମନେ ମନେ ନ ଘଟିବ ଦିନେ
ସଦୟ ନୋହିଲେ ହରି । ୧୬ ।

ଉତ୍ତର ଦେଇଣି ମାଗୁଛୁ ମେଲାଣି
ଉଷେ ବିଶ୍ୱବିମୋହିନୀ

ତବ ଗୁଣଗଣେ ଦେଖି ଗଲୁ ଭାସି
ଚନ୍ଦ୍ରସ୍ରୋତେ ସୁହାସିନୀ । ୧୭ ।
ସବୁ ଜାଣ ଦେବ କସ ନିବେଦବ
ମୁହିଁ ମୁଢ଼ ଦୀନ ହୀନ
ପାନ୍ଥ ଦୁଃଖ ନଶା ଦୁଃଖିନୀ ଓଡଶା
ଦେଖ ବାରେ ଶୁଭଦନ । ୧୮ ।
ଦେବ ଦୟାମୟି ବାରେ ଦୟା ବହି
ଏଥିରୁ ଉପାୟ କର
ଏହି ନିବେଦନ କରେ ଅକିଞ୍ଚନ
ବାରମ୍ବାର ଯୋଡ଼ କର । ୧୯ ।

---

## ଅନାମା ସୁମନକଢ଼ୀ ।

"O fairest flow'r no sooner blown but blasted."

*Milton.*

( ନାମକରଣ ହୋଇ ନ ଥିବା ମାତୃହୀନ ଶିଶୁ
ବୟୋୋଗୋପଲକ୍ଷେ ଲିଖିତ )

---

ଅନାମା ସୁମନକଢ଼ୀ ନ ଫୁଟି ପଡ଼ିଲୁ ଝଡ଼ି
ଅକାଶ କୁସୁମ ପରି ହେଲ ଅନ୍ତର୍ଦ୍ଧାନ
ଶିଶୀ ହୀନ କର ହାୟ ଜୀବନ—ଉଦ୍ୟାନ । ୧ ।
ବିମଳ ସୁରଭି ତନୁ ବଢୁଥିଲ ଦନୁ ଦନୁ

ଦେଖି ହେଉଥିଲା କେତେ ସୁଖର ଉଦୟ
ଏବେ ଛିଣ୍ଡାଇଲା କଢ଼ୀ କେଡ଼େ ସେ ନିର୍ଦ୍ଦୟ !!! । ୨ ।

ଆଶା କରୁଥିଲା ଚିତ୍ତ    ହେଲେ କଢ଼ୀ ବିକଶିତ
ତାପିତ ଜୀବନ ବାରେ କରିବ ରଞ୍ଜନ
ହାୟରେ ସେ ଆଶା ଏବେ ନିଶାର ସ୍ୱପନ । ୩ ।

ସ୍ନେହବାରି ଅନୁକ୍ଷଣେ    ସିଞ୍ଚୁଥିଲୁ ସଯତନେ
କରି ତାକୁ ସବୁ ଆଶା ଭରସାର ସ୍ଥଳ
କାହିଁ ପରେ ଏବେ ଆଉ ସିଞ୍ଚିବ ସେ ଜଳ ? । ୪ ।

ସୌରଭ ବିସ୍ତାରି କରି    ଜଗତର ମନ ହରି
କରି ନାହିଁ କଢ଼ୀ କିଛି କୀରତି ସ୍ଥାପନ
ନିର୍ଗତ ଯେ ତାହାପାଇଁ କରିବ ରୋଦନ । ୫ ।

କାହିଁପାଇଁ ପଞ୍ଚମାସ    ଷଡ଼ିହନ ଧରିବାସ
କରି, କେଉଣେ ଚଳିଗଲା କଢ଼ୀ ଏଡ଼େ ତ୍ୱରା
ନୁହେଁ କିରେ ଉପଯୁକ୍ତା ତାର ବସୁନ୍ଧରା ? । ୬ ।

ଯାଇଥିଲା ମାତା ଆଗେ    କିବା ତାର ଅନୁରାଗେ
ଅନୁରକ୍ତା ହୋଇ ଚଳି ଗଲା ତାରି ପାଶ
ଜନକ ନୁହଇ କେହି କରିଣ ପ୍ରକାଶ । ୭ ।

କରିବାକୁ ପରଚାର    ପୁରାତନ ସୁଧୀଗୀର
" ଜନନୀ ଜନମଭୂମି ସ୍ୱର୍ଗୁ ଗରୀୟସୀ "
ସ୍ୱର୍ଗୀୟା ଜନନୀ ଅଙ୍କେ ହେଲା କି ପ୍ରୟାସୀ ? । ୮ ।

କହ କଢ଼ି କହ ବାରେ    ଯେଉ ଗୃହେଁ ଅଭାଗାରେ
( ଜଡ ଆତ୍ମା ଯଦି ଶୁଣେ ମାନବ ବଚନ )

କହ ଏବେ କାହିଁ ତୁହ୍ମ କରୁ ବିଚରଣ । ୯ ।

ମନୋରମ ନିକେତନ                    ଯହିଁ ବସେ ସୁରଗଣ

କଳ୍ପନା କଳ୍ପିତ ଅବା ନନ୍ଦନ କାନନ

କିଏସେ ହୋଇଛନ୍ତି ତୋର ବଳାସଭବନ ? । ୧୦ ।

ଅଟ୍ଟୁଳି ଗଗନ ଷଶି                    ସ୍ୱାନ୍ତ ଉଠରେ ଥିଲୁ ପଶି

ଲୁଣ୍ଠିବାପାଇଁ ଏଠି ମୂର୍ଖ ସୁଧାମୟ

ଫେରଗଲୁ, କହି, ଦୂର ହେଉ ସେହି ଭୟ ? । ୧୧ ।

ଅବା ଅନ୍ୟ ଦେବୀ ଦେବ                    ହୋଇଥିଲୁ ଆବିର୍ଭାବ

ନରରୂପେ ନରଲୋକେ କରିବୁ ପ୍ରକାଶ

ଦେବଭାବ ? କାହିଁପାଇଁ ହେଲୁ ନିରୁଦେଶ ? । ୧୨ ।

କ୍ଷମା ନ ବଳଇ ମତ                    କରିବାକୁ ଅବସ୍ଥିତ

ବନ୍ଧୁବନ୍ଦ ଯେତେ ପରେ ? ଭବଦରଶନେ

ଜଗିଥାନ୍ତା ଦେବଭାବ ନରଗଣମନେ । ୧୩ ।

ଯିବାରୁ ତୋଠାରେ ଲକ୍ଷି                    ନିର୍ଦ୍ଦୟ ଶମନ ଆଖି

ନେଲା କିରେ ରଖିବାକୁ ନିଜ ଉପବନେ ?

ପରିଭାଷି କଥା ସେହି ବିଖ୍ୟାତ ଭୁବନେ । ୧୪ ।

ଶୁଣିଛୁ ସେ ଯମପୁର                    ସ୍ଥାନ ଅତି ଭୟଙ୍କର ।

କେମନ୍ତେ ଧରିବ ତହିଁ କଢ଼ୀ ସୁକୋମଳ

ଲବଣିରୁ ବଳି ତନୁ ଅଛି ସୁକୋମଳ ? ୧୫

ପାପରେ ଦୂଷିତ ପ୍ରାଣ                    ନଏ ହୋଲ ଜନୁସ୍ଥାଣ

କାଲେ କାଲେ ଧର୍ମଶାସ୍ତ୍ରେ ହୋଇଛି କଥିତ

କଢ଼ୀତ ହେବାର ନୁହେଁ ପାପେ କଳଙ୍କିତ ? । ୧୬ ।

ଥିଲା ସେହୁ ପାରିଜାତ    ଲୋଭ ହୋଇବାରୁ ଜାତ
ନଷ୍ଟେ ଆସି କେହୁ ଦେବ ନେଲା ଥବା ହର
କଏ ଏବେ ଆଉ ମୋର ଶୁଣିବ ଗୁହାର ? । ୧୭ ।

ବାମ ହେଲେ ଦେବତାଏ,    ମାନବ ନ ନାମପାଏ
ସର୍ବଶକ୍ତିମାନ ଦେବେ ଶାସ୍ତ୍ରରେ କଥିତ
ଦେବତା ନିର୍ଦ୍ଦୟ ହେବା କେଭେ କି ଉଚିତ ? । ୧୮ ।

ବଡ଼ ଯେଉଁ କାର୍ଯ୍ୟ କରେ ସର୍ବାଙ୍ଗେ ସୌନ୍ଦର୍ଯ୍ୟ ଧରେ
ରଙ୍କଲୋକ କଥା ନୁହେଁ ଅତି ବିଡ଼ମ୍ବନା
ମନରେ ମାରିବା ଭଲ ମନର ବେଦନା । ୧୯ ।

ଯେବା ଯାଏ ଦେବପୁରେ,    ଫେରି ସେ ନ ଗୃହେଁ ଥରେ
ନ ଜାଣେ ସେ ସ୍ଥାନ କାହିଁ କେମନ୍ତ ସେ ଦେଶ
କାହିଁ କହେ ସେ ଦେଶରେ ମମତାର ଲେଶ ? । ୨୦ ।

ଈଶ୍ବରଙ୍କ ଅଭିପ୍ରାୟ    ବୁଝିବା କଠିନ ଦାୟ
ଜଗତରେ ସବୁ ତାଙ୍କ ଇଚ୍ଛାର ଅଧୀନ
ଚକ୍ଷୁ ଥାଉଁ କ୍ଷୁଦ୍ରପ୍ରାଣି ନର ଚକ୍ଷୁହୀନ । ୨୧ ।

ଯାହା ନାମ ଦୟାମୟ    ହେଲେ ସେହୁ ନିରଦୟ
ଦୟାରୁ ନୁହଇ ସେହୁ କେଭେହେଁ ବଞ୍ଚିତ
ନିଗୂଢ଼ ଉଦ୍ଦେଶ୍ୟ ତାଙ୍କ ନରେ ଅବିଦିତ । ୨୨ ।

ଏ ଯେହ୍ନେ ଅନାମା କଣ୍ଠୀ    ଗୃଲିଗଲା ଯଦ୍ୱ ସ୍ଥିତ
ଥିଲା ତବ ଦତ୍ତ; ସର୍ବ ଗଲା ଭୂମି ପାଇଁ
ଇଚ୍ଛା ତବ ପୂର୍ଣ୍ଣ ହେଉ ଜଗତ ଗୋସାଇଁ । ୨୩ ।

ଅହେ ଦୟାମୟ ଦେବ;    ସତେ ଏପାପୀକୁ ନେବ

ଯହିଁ ଖେଳେ ତବ-ପ୍ରେମ-ଅନନ୍ତ ଲହରୀ
ତୁମ୍ଭ ବିନା, ଅନ୍ୟ କଏ ପାପୀର କାଣ୍ଡାରୀ ? ।୨୪।

——————

ଭିକ୍ଟୋରିୟା ।

ଧନ୍ୟ ଭିକ୍ଟୋରିୟା ଭାରତଈଶ୍ୱରୀ !
ଧନ୍ୟ ଧନ୍ୟ ତୁମ୍ଭ ଶାସନ ଚାତୁରୀ ,
ଧନ୍ୟ ଧନ୍ୟ ତୁମ୍ଭ ଗୁଣର ମାଧୁରୀ !
ଶେଷ କେ କରିବ ବର୍ଣ୍ଣନା କରି ?
ପୁତ୍ରପରି ପ୍ରଜା ପାଳନ କରୁଛ ,
ମଙ୍ଗଳ ତାଙ୍କର ସଦା ମନାସୁଛ ,
ଉନ୍ନତିବିଧାନ କେତେ ଉପାୟ କରୁଛ ,
ଧନ୍ୟ ଧନ୍ୟ ଧନ୍ୟ ଜନନୀ ତୁମ୍ଭର !
ଯମର ସୋଦର କନ୍ଷ୍ଟେବଲଗଣ ,
କରୁଛନ୍ତି ଦିବାରାତ୍ର ବିଚରଣ ,
କରିବାକୁ ରକ୍ଷା ପ୍ରଜା ଧନ ପ୍ରାଣ ,
ଧନ୍ୟ ଧନ୍ୟ ଧନ୍ୟ ଯତ୍ନ ତୁମ୍ଭର !
ବାଳ ବୃଦ୍ଧ ଯୁବା ଓ ଅବଳାଗଣ ,
ସବଳ ଦୁର୍ବଳ ସୁଖୀ ଦୁଃଖୀଜନ ,
ସ୍ୱଚ୍ଛନ୍ଦେ କରନ୍ତି ଜୀବନ ଯାପନ ,
ଧନ୍ୟ ଧନ୍ୟ ଧନ୍ୟ ରାଜତ୍ୱ ତୁମ୍ଭର !
ଦେଶେ ବିରାଜୁଛି ଅପରୂପ ଶାନ୍ତି ,
ସର୍ବେ ହିଂସାଭାବ ମନୁ ଛାଡ଼ିଛନ୍ତି ,

ବାଘ ଛାଗ ପାଣି ଏକାଠେ ପିଅନ୍ତି ,
ଧନ୍ୟ ଧନ୍ୟ ଧନ୍ୟ ପ୍ରତାପ ତୁମ୍ଭର !
ପଥଶ୍ରାନ୍ତି ଦୂର କରିବାର ପାଇଁ ,
ଲାଗିଅଛି ବୃକ୍ଷ ଧାଡ଼ୀ ଧାଡ଼ୀ ହୋଇ ,
ହରୁଛନ୍ତି ଶ୍ରମ ଆଶ୍ରମକୁ ଦେଇ ,
ଧନ୍ୟ ଧନ୍ୟ ଧନ୍ୟ ଉପାୟ ତୁମ୍ଭଙ୍କ !
ବାଷ୍ପୀୟ ଶକଟ ଅତି ଚମତ୍କାର ,
ନିମିଷେ ଭ୍ରମଇ ପଥ ହଜାର ,
ପବନଙ୍କୁ ଗତି ତାର ଖରତର ,
ଧନ୍ୟ ଧନ୍ୟ ଧନ୍ୟ ଶିଳ୍ପ ତୁମ୍ଭର !
ପୁଣି ସବୁବେଳେ ବନ୍ଧ୍ୟଗିରିବର ,
ଲଙ୍ଘି ଅନିର୍ମିତ ବର୍ତ୍ମକୁ ତୁମ୍ଭର ,
ଯତ୍ନେ ଧରିଅଛି ହୋଇ ନତଶିର ,
ଧନ୍ୟ ଧନ୍ୟ ଧନ୍ୟ ବିକ୍ରମ ତୁମ୍ଭର !
ଶୋଣ ପଦ୍ମା ନଦ ନଦୀ ଭାଗୀରଥୀ ,
ଧରୁଛନ୍ତି ସେତୁ ବିସ୍ତାରଣ ଛତି ,
ଯହିଁ ଅବହେଳେ ଗମୁଅଛି ହାତୀ ,
ଧନ୍ୟ ଧନ୍ୟ ଧନ୍ୟ ଆଦେଶ ତୁମ୍ଭର !
ସ୍ରୋତସ୍ୱତୀ କେତେ ହୋଇ ଲୁବ୍ଧଗତି
ଉଚ୍ଚସ୍ଥାନେ ଜଳ ଯୋଗାଉଅଛନ୍ତି ,
ଆସ୍ଥା ନାହିଁ ତେଣୁ ବୃଷ୍ଟିଜଳ ପ୍ରତି ,
ଧନ୍ୟ ଧନ୍ୟ ଧନ୍ୟ କୌଶଳ ତୁମ୍ଭର !

ଯେଉଁ ସ୍ଥାନ ଅଟେ ନାବ୍ୟ ନଦୀହୀନ ,
କଟାଯାଉଅଛି ତହିଁ ଖାଲମାନ ,
ଯହିଁ ଗଳୁଅଛି ଅର୍ଣ୍ଣବଯାନ ;
ଧନ୍ୟ ଧନ୍ୟ ଧନ୍ୟ ଉଦ୍ୟମ ଭୂମିର !

ବିଦେଶୀୟ ଦ୍ରବ୍ୟ ତେଣୁ ଦ୍ୱାରେ ଦ୍ୱାରେ ,
ବିକା ହେଉଅଛି ସ୍ୱଳ୍ପମୂଲ୍ୟରେ ,
ଲୋକେ କିଣୁଛନ୍ତି ଆନନ୍ଦ ମନରେ ,
ଧନ୍ୟ ଧନ୍ୟ ଧନ୍ୟ ଉପାୟ ଭୂମିର !

ସ୍ୱଦେଶରେ ଯାହା ହୋଇଅଛି ଜାତ ,
ବିଦେଶେ ପ୍ରେରିତ ହେଉଅଛି ତ୍ୱରିତ ,
ତେଣୁ ମୁଦ୍ରାଗମ ଦେଶରେ ବହୁତ ,
ଧନ୍ୟ ଧନ୍ୟ ଧନ୍ୟ ବାଣିଜ୍ୟଭୂମିର !

ଯେଉଁ ଠାବରେ ହୁଏ ଦୁର୍ଭିକ୍ଷ ପତନ ,
ତାହାସ୍ଥାନକୁ ଆଣି ଖାଦ୍ୟଦ୍ରବ୍ୟମାନ ,
ଯୋଗାଉଣ ଅଛି ସେଠାରେ ବହନ ,
ଧନ୍ୟ ଧନ୍ୟ ଧନ୍ୟ ଉଦ୍‌ଯୋଗ ଭୂମିର !

ପ୍ରିୟଜନ ଯେବେ ଯାଉଛି ବିଦେଶ ;
ବାନ୍ଧବ ସକଳ ଘେନ ତା ସନ୍ଦେଶ ,
ଧାଉଁଛନ୍ତି ସଦା ନ ମାର ନିଶ୍ୱାସ ,
ଧନ୍ୟ ଧନ୍ୟ ଧନ୍ୟ ଜନ୍ମ ଭୂମିର !

ଦୂରଦେଶୁଁ ବାର୍ତ୍ତା ତାଡ଼ିତବଳରେ ,
ଆସୁଅଛି ପୁଣି ପଲକ ଭିତରେ ,

ପଢ଼ୁଛନ୍ତି ଲୋକେ ବସ୍ତ୍ର ଚତ୍ୱରେ ,
ଧନ୍ୟ ଧନ୍ୟ ଧନ୍ୟ ବଙ୍କାନ ଭୂମ୍ୱଜ୍ଞ !
ଏଭଳ୍ପ ସମ୍ପୃତରେ ସଦା ଏ ଜଣାଣ ,
କରନ୍ତୁ ଦୀର୍ଘାୟୁ ଦେବ ଜନାର୍ଦ୍ଦନ ,
କର ଏହ୍ନପର ପ୍ରଜାଙ୍କୁ ପାଳନ ,
ମଙ୍ଗଳ ହୃଦୟୀ ଭାରତଭଣ୍ଡାରୀ !

—

# କାର୍ତ୍ତିକ ସ୍ନାନ ।

ରାଗ ବଙ୍ଗଳାଶ୍ରୀ ।

ପୁଣ୍ୟମାସ ଖ୍ୟାତ କାର୍ତ୍ତିକ ହେମନ୍ତ
ହୋଇଁ ଉପନୀତ ଐଧେ ।
ରବିତେଜ କ୍ଷୀଣ କ୍ଷୀଣ ହେଲା ଦିନ
ଦୀର୍ଘ ହେଲ୍ଲ ଏକା ନଶୀ ।୧।
ମନ୍ଦ ମନ୍ଦ ଶୀତ ବାତ ପ୍ରବାହିତ
ଉତ୍ତରଦଗୁଁ ହୋଇଲ୍ଲା ।
ନଶାରେ ପ୍ରଚୁର ବରଷି ଶିଶିର
ଶୀତାଗମ ଜଣାଇଲ୍ଲା ।୨।
ରଜନୀ ଶେଷରେ ଉତ୍ତୁଣୀ ଶୋଭରେ
ରସାଇଲ୍ଲ ଜନ ଚର୍ତ୍ତ ।
ଏମନ୍ତ ଯାମିନୀ ଯୋଗରେ କାମିନୀ
ଅତି ସୁଖେ କଳନ୍ଦ୍ରଭ ।୩।

ବନଭ୍ରଙ୍ଗ ସର୍ବେ ଜୀବଙ୍କୁଲ ଏବେ
ସୁସୁପ୍ତା ନିସ୍ତବ୍ଧା ମହୀ ।
ଏକା ନିଶାଚରେ ବୁଲନ୍ତି ସୁଖରେ
ମୁଖେ କିଛି ରବ ନାହିଁ । ୪ ।
କେବଳ ପ୍ରହରୀ ସାବଧାନ କରି
କୁହାଟଇ ହଇ ହଇ ।
ଅରକ୍ଷିତ ଶ୍ୱାନ ଭେଉ ଭେଉ ସ୍ୱନ
କରୁଅଛନ୍ତି ରହି ରହି । ୫ ।
ସୁଧାକର ସୁଧା ପିଇ ବସୁଧା
ହୋଇଛି ଚେତନା ହତ ।
ରଚିବାକୁ ରାସ କରି କି ମାନସ
ମାଯ୍ୟି କଲେ ନିଶାନାଥ । ୬ ।
କୁମୁଦିନୀ ସରେ ତାରକା ନଭରେ
ବ୍ରଜେ ଯେସନେ ଗୋପାଙ୍ଗନା ।
ସରେ ପୁଣି ଭାବେ ଶୃଗୁ ଶଶୀ ଶୋଭେ
କୁଞ୍ଜେ କୁଞ୍ଜେ କୃଷ୍ଣ କହ୍ନା । ୭ ।
ବାତ ବକ୍ଷ କମ୍ପିତା ପୂର୍ଣ୍ଣ ବିକଶିତା
କୁମୁଦିନୀ ଇତସ୍ତତଃ ।
ଡୋଳଅଣି ବଳେ ହୃଦୟ କମଳେ
ଧରିବାକୁ ପ୍ରାଣନାଥ । ୮ ।
ନନପୁତ ପରି ନ ଦେଖିଲି ଧରି
ଶଶୀ ବନ୍ଧୁ ପାଶେ ଥାଇ ।

ଦୋଳ ଜଳ ସଙ୍ଗେ ଖେଳୁଅଛୁ ରଙ୍ଗେ
ସୌଦାମିନୀ ମନ ମୋହି । ୯ ।
ମାୟାରେ ବହିଲା ପ୍ରେମରେ ଅଥୀର୍
ସ୍ଥିର ନୁହେ କ୍ଷଣେ ଧନୀ ।
ହୃଦୟ ରତନ ହୃଦରେ ଧାରଣ
ହେଉ ନାହିଁ ମନେ ଗୁଣି । ୧୦ ।
ଏଡ଼େ ପାଗଳନୀ ଦେଖି ସପତ୍ନୀ
ତାଙ୍କ ନରେ ହ୍ଲିଣ୍ଡ ହସେ ।
ଯେଣୁ ନିଶାନାଥ ଧର ତାଙ୍କନାଥ
ନାମ ଭଜେ ତାଙ୍କ ପାଶେ । ୧୧ ।
କୁମୁଦଙ୍କ ସମ ନିଜର ବଲ୍ଲଭ
ନ ଦେଖେ ତାରକାବାଳୀ ।
ଚୌଦିଗେ ବେଷ୍ଟିତ ଥାଇଁ ଅଲକ୍ଷିତ
ଭ୍ରବେ ଶଶୀ ଯାଏ ଗୃହ । ୧୨ ।
ଏହୁପର ଚନ୍ଦ୍ର ହୋଇ କୃଷ୍ଣଚନ୍ଦ୍ର
ରଚେ ରାସ ନବ ନିତ୍ୟ ।
ଶ୍ୟାମପ୍ରେମର ଲୀଳା ମନୋହର
ଦେଖି ମହାତୋଷ ଚିତ୍ତ । ୧୩ ।
ଧନ୍ୟ ସୁଧାକର ପ୍ରେମ ସୁଧାକର
ସୁଧାକର ତବ ଦର୍ଶି ।
ଦେଖି ଶ୍ୟାମ ମୁଖ ନ ଭୁଲେ କେ ଦୁଃଖୀ
ସୁଖାର୍ଣ୍ଣବେ ଯାଏ ଭାସି ? ୧୪ ।

ପ୍ରେମର ଆଦର୍ଶ    ରୂପ କରୁ ଧ୍ୟାନ
ଗଢ଼ିଛୁ ଉଜ୍ଜ୍ୱଳ ତନୁ ।
ଶୁଣି ଚନ୍ଦ୍ର ନାମ    ନ ଉଠେ ନିଶ୍ୱାସ
ପ୍ରେମ ଉତ୍ସ କାହାମନୁ ? । ୧୫ ।

ପ୍ରେମର ଦେଉଳ    ପୂତ ପ୍ରେମଲୀଳା
ସହ ତାର ବୃନ୍ଦାବନୀ ।
ସାଙ୍ଗ, ତାର ସଙ୍ଗେ    ଧୀରେ ଧୀରେ ରଙ୍ଗେ
ଆସିଲେ ଦିଗବାରୁଣୀ । ୧୬ ।

ପ୍ରାଚୀ କଞ୍ଚୁକରେ    ସୁନ୍ଦର ବେଶରେ
ଶୁକ ତାର ଧରି ଭିଲେ ।
ଅଛି ମନୋହର    ବିନ୍ଦୁ ସିନ୍ଦୁରର
ଉଷା ଦେବୀ ଉଭା ହେଲେ । ୧୭ ।

ଏଯସନେ ଜଗତ୍    କହେ ଶୁକ ତାର
ଅହେ ଜଗଦ୍‌ବାସିଗଣ ।
ଉଠ ବେଗ ଉଠ    ନ କର ହେ ମଠ
ଦିନନାଥ ଆଗମନ । ୧୮ ।

ହେଲାଣି ନିକଟ    ଅରୁଣ ପ୍ରକଟ,
ପୂର୍ବଦିଗ ଚାହିଁ ଦେଖ ।
ସ୍ନେହରେ ରଞ୍ଜିତ    ଏଣେ ନିଶାନାଥ
ହେଲେଣି ମଳିନ ମୁଖ । ୧୯ ।

ବୃନ୍ଦାବନୀ ଧନୀ    ମୁଦ୍ରିତ ହେଲାଣି
ବିକଶିତା କମଳିନୀ ।

ମନ୍ଦ ଗୁଞ୍ଜବନ୍ଧ ସୁମନଙ୍କ ସଙ୍ଗ
ପ୍ରେମଲୀଳା ରଚନ୍ତେ । ୨୦ ।
ବାଉ ବକଣ୍ଠା କଳମୀକୂଟା
ଦେଉଛୁ ଶୋଷେ ଘଉଡ଼ି ।
ପ୍ରେମର ଲୋଲୁପ ନିର୍ଲଜ୍ଜ ମଧୁପ
ଯାଉ ନାହିଁ ତାଙ୍କୁ ଛାଡ଼ି । ୨୧ ।
ପ୍ରେମ ମଧୁ ଆଶେ ବୁଲେ ଚଉପାଶେ
ଗୁଣ ଗୁଣେ ଗୁଣସ୍ୱରେ ।
ଦେଖ ଶୃଙ୍ଗାର ମୋହନ ମନ୍ତ୍ରର
ମାନିନୀ ଦମ୍ଭ ଭଙ୍ଗରେ । ୨୨ ।
ପ୍ରତାପ ମଳନ ଯାନସ୍ନାନ ସ୍ଥାନ
ହୁଅର ସୃଷ୍ଟିତଳ ଦେଖି ।
ଜାଣିଲେ କାମିନୀ ଗନ୍ଧର୍ବ ସ୍ୱାମିନୀ
ଉଠିଲେ ଶଯ୍ୟା ଉପେକ୍ଷି । ୨୩ ।
ସ୍ନାନକୁ ବାହାର ହେବାକୁ ତତ୍ପର
ପୁରେ ପୁରେ ନାରୀଗଣ ।
ବାଲୁକା ପୂଜାର ନୈବେଦ୍ୟ ସମ୍ଭାର
ଯତ୍ନେ କର ଆୟୋଜନ । ୨୪ ।
ଅମ୍ବର ଚନ୍ଦନ ସିନ୍ଦୂର ସୁମନ
ଦୁବା ଘୃତ ଦୀପ ଧାନ୍ୟ ।
ଆତପ ତଣ୍ଡୁଳ ଇକ୍ଷୁ ନାରିକେଳ
ରମ୍ଭାଆଦ ଦ୍ରବ୍ୟମାନ । ୨୫ ।

ଦିବ୍ୟ ଶୃଙ୍ଗଢ଼ାଳୁର ଅତି ଯତନରେ
ଦେବ ପୂଜାପାଇଁ ଭଲ ।
ଦରିଦ୍ର ଚଇଲ ଏବେ ଦୁଲୁଲ
ଯେଣୁ ବାହାରଲେ ନାରୀ । ୨୬ ।
ଗୋଟି ଗୋଟି ପୁରୁ ବାହାର ଉମ୍ଭୁରୁ
ଦିଶୁଛନ୍ତି ତୋଷ ମନେ ।
ସୁନୀଳ ଆକାଶେ ତାରକା ପ୍ରକାଶେ
ଯେସନେ ନିଶା ଆଗମନେ । ୨୭ ।
କେ କହେ ସଙ୍ଗାତ ପକାଇ ସପତ
କହୁଅଛୁ ଡାକିବାକୁ ।
କେ କହେ ସଖିଏ ଉଦଗୋ ଝିଏ
ଡାକଅଣେ ଅଭଡ଼ାକୁ । ୨୮ ।
କେ ଡାକେ ପାର୍ବତୀ ମୋଦନୀ ରେବତୀ
ହୀରା ହୃଷୀ ପାଶୀ ସାବୀ ।
ବର୍ତ୍ତୁଳ ଅଶୋକା ହୋଇ ଉକାଦକା
ଚଳଲେ ଅନେକ ନାରୀ । ୨୯ ।
ଗୁରୁ ଚନ୍ଦ୍ରାନନା ମନ୍ଥରଗମନା
ଶୁଳୁଛନ୍ତି ଯୁଥେ ଯୁଥ
ଅତି-ଘ୍ରାଣ-ଫୁଲ ମାଲ ବ ମଞ୍ଜୁଳ
ଝୁଲୁଛନ୍ତି ମନ ବାଟେ । ୩୦ ।
କଟିରେ କଙ୍କିଣୀ ବାହେ କଙ୍କଣ ଝଣି
ପଦ୍ମରେ ନୂପୁର ସ୍ୱନ ।

କବା ଶୀଳମୁଖେ ମଧ୍ୟା ମଳ ସୁଖେ
କରନ୍ତି ମତ୍ତେ ଗୁଞ୍ଜନ । ୩୧ ।
ଅବଲାର ମନ ରମ୍ୟ ଉପବନ
ଯତ୍ନେ ଦେଲେ ସୁରକ୍ଷିତ ।
କରୁବା ବଢ଼ଇ ସାନବଡ଼ ଉହିଁ
ମୀତ ଗୁଳ୍ମ ଅଗଣିତ । ୩୨ ।
ଏ ଅଟେ ତାଙ୍କର କୁଳର ବେଭାର
ଦୁଇ ଗୃହ ଏକତ୍ରିତ ।
ହୋଇଲେ ଅଶନ ବସନ ଭୂଷଣ
କଥାରେ ବଳାନ୍ତି ଚିତ୍ତ । ୩୩ ।
ନଣନ୍ଦ ଦୁର୍ଗୁଣ ସ୍ୱାମୀଆଚରଣ
ବୋହୂ ଭଲ ମନ୍ଦ ପଣ ।
ରନ୍ଧନ ପ୍ରଣାଳୀ ପଡ଼ିଶାଙ୍କ କଳି
ଛାଡ଼ି ନ ଜାଣନ୍ତି ଆନ । ୩୪ ।
ଗୃହୁ ଗୃହୁ ବୁଢ଼ୀ କହେ କଳହୁଡ଼ୀ
ବଡ଼ ସାନବୋହୂ ମୋର ।
ବୁଦ୍ଧି ଦଣ୍ଡ ନାହିଁ କେମନ୍ତେ ମୁଁ କେଇ
ତାହାଙ୍କୁ ଗୃହକ ଘର । ୩୫ ।
ଶୁଣି ଅନ୍ୟ ବୃଦ୍ଧା, କହେ ହୋଇ କ୍ଷୁବ୍ଧା
ତୋ ଦୁଃଖୁଁ ମୋ ଦୁଃଖ ବଳେ ।
ଏକଇ କୁମର ଦେଖି କୁଳାଙ୍ଗାର
ପୋଡ଼ ମରେ ଚନ୍ତାନଳେ । ୩୬ ।

କେ କହେ ଲୋ ମିତ    ମୋର ପ୍ରାଣନାଥ
ଯାବଂଣେ ନଉଠିଲେ ଘରେ ।
ଉପସ୍ଥି ମିଛଣୀ    କହେ "ଡାକ-ପାଣି"
କର ଗୁଣୀ ଅଣି ଖରେ । ୩୭ ।
ନୂଆ ଭୂଆଶୁଣୀ,    ସଙ୍ଗାତକୁ ଟାଣେ
ଏଁ କହନ୍ତି କାନେ କାନେ ।
ବୋଧିନୀ ସଙ୍ଗାତ    ସ୍ତିରକର ଚଉ
କଥା ରହିଲା ମୋ ମନେ । ୩୮ ।
କେଉଁ କ୍ଷଣୀମୁଖୀ    ହୋଇ ଅତି ଦୁଃଖୀ
କହେ କଲ ଯେତେ ଅଳ ।
ସବୁ ବୃଥା ହେଲା    ଦଣ୍ଡବତ୍ ଗଲା
ନ ପାଇଲି ରଜାମାଲୀ । ୩୯ ।
ଧୋନାକେତେ ପାଇ    ବୀପଘର ଯାଇଁ
ନାକ ବାଲ ଧରାଇବା ।
ହସି ପ୍ରାଣସଖୁ    କହେ ଅଜ ଯାଇଁ
ଶାଶୁ ଆଗେ କହୁ ଦେବ ।୪୦।
କହେ କେଉଁ ବାଳୀ    ବନ୍ତଳ କଦଳୀ
ନ ମିଳେ ହବିଷ୍ୟ ପାଇଁ ।
କହେ କେଉଁ ଗୋପୀ    ପେ ପେଟକାରୁଣୀ
ବୁଡେ ଭାର, ପୁଣ୍ୟ କାହିଁ ?।୪୧।
ଏହପର ଭାଷି    କେତେ ମୃଦାଳସୀ
ଗ୍ରଲୁଛନ୍ତି ସୁବେଶ ରଙ୍ଗେ ।

ମେଘେ ଗିରିତ୍ରର ନାଦ ଝର୍ଝର
ମେଳିବାକୁ ନଦୀସଙ୍ଗେ । ୪୨ ।
କଅଁ ନବସରେ ନଦୀ ବେନ ତୀରେ
ପଦ୍ମବେଣୁଁ ଘାଟି ବାଲି ।
କ ମହୀମହଲା କଣ୍ଠେ ବନ୍ଧିକଳ୍ପ
ଫୁଲ-ଗୁମ୍ଫସମାଳ ? । ୪୩ ।
ମରଦନ ସାର ଗଙ୍ଗା ନାମ ହର
ବୃଙ୍କ ଦେହୁ ନାଶ ଜଳେ ।
ଘନ ଦରଶନ ଦେଉଁ କ ସ୍ୱପନ
ଚପଳା ସରବେ ଖେଳେ । ୪୪ ।
ବକ୍ଷ ପରମାଣ ଜଳେ ବାଳାଗଣ
ଅହା କେଡ଼େ ମନ ଲୋଭା ।
ଦେଖିଲେ ନୟନ ପଲକ ବର୍ଜନ
କଳନ ପାର ଏ ଶୋଭା । ୪୫ ।
ନେତ୍ର ଇନ୍ଦିବର ବନ୍ଧୁଲି ଅଧର
ନାସା ଶୁକ ତିଳଫୁଲ ।
ଦନ୍ତ କୁନ୍ଦକଢ଼ି ଯତନେ ସଜାଡ଼ି
କମଳେ କର କେ ଠୁଳ । ୪୬ ।
ଭସାଇଛି ନୀରେ ଅତି ଯତନରେ
ଆହା କେଡ଼େ ମନୋହର ? ।
ବଦନନାଥ ଯାଇ ଶୁଣ୍ଡିଙ୍କ କ ମନ୍ତ୍ର
ଅପୂର୍ବ ସ୍ୱମନସ୍କାର ? । ୪୭ ।

ମକରନ୍ଦ ଅଂଶେ                    ମହା ମନୋଲ୍ଲାସେ
ଅଳିବୃନ୍ଦ ଆସେ ପାଶେ ।
ଭୋଳା ମଧୁକର                    ଦେଖିଣ ସତ୍ୱର
ଫେରି ଯାନ୍ତି ଦ୍ୱନ୍ଦ୍ୱ ଭାସେ । ୪୮ ।
ନୟନର ଶୋଭା                    ଦର୍ଶନେ ସଫରୀ
ଦୂରେ ଗଲେ ଅପସରି ।
ବାହୁକୁ ମୃଣାଳ                    ବଶୃର ମରାଳ
ବୁଲନ୍ତି ଦେହ ଭର୍ତ୍ସି । ୪୯ ।
ମହା ତୋଷଭରେ                    ରଥାଙ୍ଗ ଚକୋରେ
ଧାଇଁ ଆସେ ମୁଖ ପାଶେ ।
ଦେଖି କର୍ଣ୍ଣପାଶ                    ଲଜ୍ଜାଙ୍କ ବା ତ୍ରାସ
ପଳାଇଲେ ଦଶେ ଦଶେ । ୫୦ ।
ସୁନ୍ଦରୀଙ୍କ ବଦନ                    ଦିଶଇ ଏସନ
ପୂର୍ଣ୍ଣ ଶଶୀ ଜଳଧିରେ ।
ବୁଡ଼ନ୍ତି ଭୟରେ                    ଧାଉଁନ୍ତି ପଛରେ
ରାହୁ କବା ରୋଷଭରେ । ୫୧ ।
କବା କମନୀୟ                    କୃଷ୍ଣ ଉରସ୍ଥଳୟ
ଯମୁନାର ଗଙ୍ଗାନୀରେ ।
ଉଠେ ମନୋଲ୍ଲୋଳ                    ପ୍ରୟାଗର ଶୋଭା
ବକାଶିଲା ତଟନୀରେ । ୫୨ ।
କଲ୍ଲୋଳ ଉଠେ ଜଳୁ                    ଦେଉଁ ମନୋଲ୍ଲୋଳ
ଶୋଭା ଜନ ମନ ହରେ ।

ଶୀତ ଜରଜର    ବାମା କଳେବର
  ଢେନକ୍ଷା ଯେସେ ତୁଷାରେ । ୫୩ ।
ଦଣ୍ଡଛନ୍ତି ବାଳା    ଚନ୍ଦ୍ରଶୈଳବେଳା
  ଦ୍ରବେ ବନ୍ଧୁଗଣ୍ଡ ପରି ।
ତରଳ କାଞ୍ଚନ    ନୂହଇ ସମାନ
  ଆନ କେ ହୋଇବ ସର । ୫୪ ।
ସଇକତମରୁ    ଦେଖ ବନ ଗିରୁ
  ଅପରୂପ ଲତାଗଣେ ।
କୁନ୍ତଳ ତମାଳ—    ଦଳଙ୍କ ଶ୍ୟାମଳ
  ସୁମନ ଯେ ପଦ୍ମାନନେ । ୫୫ ।
ଚମ୍ପକ କଳିକା    ଅଙ୍ଗୁଳିରେ ଦେଖା
  ବକ୍ଷେ ଫଳ ନାରିକେଳ ।
ଅଛି କମନୀୟ    କର କଣଳଥି
  ରମ୍ଭାଉରୁ ଲତାମୂଳ । ୫୬ ।
ଗୋଟି ଗୋଟି ଲତା    ଅଦ୍ଭୁତ ଲଳିତା
  ଦେଖି ଚିତ୍ତ ପୁଲକିତ ।
ରମଣୀୟ ତର    ଦୃଶ୍ୟ ମନୋହର
  ବନ୍ଧୁ ହେଉଁ ଏକତ୍ରିତ । ୫୭ ।
ପାଳଟି ବସନ    ବିବିଧ ବରନ
  ତରତରେ ତୋଷମନେ ।
ବସିଗଲେ ବାଳା    ହୋଇ ମେଳା ମେଳା
  ବୀଳ ମୂର୍ତ୍ତି ନଢ଼ମାଣେ । ୫୮ ।

ଦେଖି ନବଦୃଶ୍ୟ                    ହୋଇଲା ପ୍ରକାଶ
ଯେଉଁଠାରୁ ଏମନ ଚିତ୍ର ।
ଲଙ୍ଗ ନାଲ ପୀତ                    ସୁମନ ମଣ୍ଡିତ
ସ୍ତବକ ତ ଅଗଣିତ । ୫୯ ।
ରଖିଦେଲା କେହୁ                    ଦେବପୂଜା ପାଇଁ
ସଯତନେ ଶୁଭକ୍ଷଣେ ।
ଧର୍ମ କର୍ମ ପାଇଁ                    ହୋଇବାରୁ ବାଇ
ଆଜ ବୃଦ୍ଧ ଯୁବା ଜନେ ? । ୬୦ ।
ଥୋକେ ଥୋକେ ଡାଳି                    ମିଳ ଅର୍ଘ୍ୟସ୍ଥାଳୀ
ଯେମ ଦେଲେ ବୃନ୍ଦାବନ ।
ରଙ୍ଗଭ ଲହରୀ                    ଦଶଦିଗ ଘେରି
ଖେଳଇ କୂଳ ଉତ୍ଫୁଲ୍ଲ । ୬୧ ।
ଅଗୁରୁ ଚନ୍ଦନ                    ସୁଗନ୍ଧ ପବନ
ଯେମ କଳା ଦୃଷ୍ଟିପଥେ ।
ଚଳେ ଧୀରେ ଧୀରେ                    ଦୃଷ୍ଟ ସୁରପୁରେ
ଅର୍ପିବାକୁ ଜନାର୍ଦ୍ଦନେ । ୬୨ ।
ଅନନ୍ତ ଅବ୍ୟୟ                    ଦେବ ଦୟାମୟ
ଯହିଁ ତହିଁ ବିଦ୍ୟମାନ ।
ଯେଉଁନନ୍ତ ବଦନ                    ଭକ୍ତ ନିବେଦନ
ଭେଦ ନାହିଁ ବଡ ସାନ । ୬୩ ।
ପ୍ରହ୍ଲାଦ କାରଣ                    ଶୁଣି ବିଶ୍ୱପତି
ଧର ରୂପ ଭୟଙ୍କର ।

ସ୍ତମ୍ଭୁଁ ଅବିର୍ଭାବି ହେଲେ ଦେବଦେବ
କମ୍ପାୟିଛନ୍ତି ଚରାଚର । ୬୪ ।
ଗଜ ଡାକ ଶୁଣି ଭକ୍ତ ଚିନ୍ତାମଣି
ଚକ୍ରେ ନକ୍ର ବିନାଶିଲେ ।
ଅଗତିର ଗତି ଅଖିଳର ପତି
ଗୁଣ ବେ ଗାଇବ ଭଲେ । ୬୫ ।
ଯାହାକୁ ଯେମନ୍ତ ଦଣ୍ଡଇ ହେମନ୍ତ
ପୂଜୁଛନ୍ତି ବଣ୍ଣପତି ।
ବାଞ୍ଛି କର ଦୂଲ ଭକ୍ତି କର ମୂଳ
ପୂଜା କିସ କରଗତ । ୬୬ ।
ପ୍ରସାଦ ଅଧର ଚନ୍ଦନ ସିନ୍ଦୂରେ
ଭାଲେ ଯେନ ତୋଷମନେ ।
ମୂର୍ଦ୍ଧେ ଚନ୍ଦ୍ରଗଲେ ଦେଖି ତତ୍ତ୍ୱ ଭୁଲେ
ଦନନାଥ ଆଗମନେ । ୬୭ ।
ଦ୍ୱିବା ମୂର୍ତ୍ତିମନ୍ତ ହୋଇ ଊଷା ସତୀ
ଶୁକତାରା ଧରି ଭାଲେ ।
ଅବିର୍ଭାବ ହୋଇ ଜଗନ୍ନାଥ ମୋହି
ପଲକେ ଉଭାଇ ଗଲେ । ୬୮ ।
ପୁଣ୍ୟ କାର୍ତ୍ତିକରେ ପ୍ରାତଃସ୍ନାନ ପରେ
ଏହିପରି ନିତ ନିତ ।
ସରଳା ଅବଳା ହୋଇ ମେଳା ମେଳା
ପୂଜେ ବ୍ରହ୍ମାଣ୍ଡର ପତି । ୬୯ ।

ମାଘ ଅବଶେଷେ  ପୂର୍ଣ୍ଣମୀ ପ୍ରଭୃଷେ
ଉଚ୍ଚାର " ଅକାମାବଇ" ।
ପାନ ଗୁଆ ଫିଙ୍ଗି  ଜଳେ ଶିଶୁଣାଙ୍କୀ
ନବେଦଲେ ମୋକ୍ଷ ପାଇଁ । ୭୦ ।
ଗୋଟି ଗୋଟି ବାଳୀ  ପୁଣି ଦୀପାବଳୀ
ଉଭ ଉମ୍ଭାପଟ୍ଟ ନାବେ ।
ନୀରେ ଭସାଇଲେ  ମିଳ ଏକାବେଳେ
ଦେଇ ହୁଳହୁଳ ସର୍ବେ । ୭୧ ।
ଶେଷ କରୁ ତପ  ଜୀବନ ପ୍ରଦୀପ
ଢ଼ବା ଦଣ୍ଡନାମ ନାବେ ।
କର ଭୂଚ୍ଛନ୍ଦନ  ସଲିଲ ପବନ
ଉସାଇଲେ ଉବାର୍ଣ୍ଣବେ । ୭୨ ।
କେତେ ବାତାଘାତ  ପାଇ ନବ୍ୟାପିତ
ଢୋଇଗଲେ ସଙ୍ଗେ ସଙ୍ଗେ ।
କେତେ ବା ଅଦୂରେ  ଅଟକିଲେ ଘରେ
କେତେ ବୁଡ଼ିଗଲେ ରଙ୍ଗେ । ୭୩ ।
ଭବେ ଜୀବ ଲୀଳା  ଦେଖାଇଲେ ବାଳା
ଢ଼ବା ଦୀପଦାନ ଛଳେ ।
ଦେଖି ପାପୀମନ  ହସାଇଲ କ୍ଷଣ
ବୃଡ଼ଲ୍ଲା ବସ୍ତୁପୁଜଲେ । ୭୪ ।

———

## ସୂର୍ଯ୍ୟାସ୍ତ ।

ଦିବାନ୍ତ; ଦିଗନ୍ତବ୍ୟାପୀ ଗଗନମଣ୍ଡଳ
ବିଭ୍ରମି ବିବିଧ ରଙ୍ଗେ ଦେବ ଗ୍ରହରାଜ
ଅସ୍ତାଚଳ-ଚୂଡ଼ାରୂଢ଼, ହାୟରେ ଯେସନ
ଛିନ୍ନ କୁରୁକୁଳଶୃଙ୍ଗ ଶରଶଯ୍ୟାପର
ନିସ୍ତେଜ ନିସ୍ତବ୍ଧ ମହାପ୍ରଶାନ୍ତ ମୂରତି
ଭଜିଲା ସାଙ୍ଗ ପୂର୍ବେ, ଅଥବା ମୃଗେନ୍ଦ୍ର
ଆବଦ୍ଧ ଲୌହପିଞ୍ଜରେ, ବେଷ୍ଟିତ ଚୌଦିଗେ
ଅସ୍ତ୍ରଶସ୍ତ୍ରଧାରୀ ମହା ଭୀମକଳେବର
ବ୍ୟାଧରୂପୀ ମେଘମାଳେ, ବିବିଧବରଣ
ଶୁଭ୍ର, କୃଷ୍ଣ, ରକ୍ତ, ନାନା ରଙ୍ଗରେ ରଞ୍ଜିତ
ଏକେ ଏକେ, ( ଯଥା ପର୍ବଦିବସେ ବାଳକେ
ରଞ୍ଜିତ ବିବିଧ ରଙ୍ଗେ ) ପ୍ରହାର କରିଲ
କେବଳ ଉଲ୍ଲାସେ ଇଚ୍ଛି ପୂରିବାକୁ ଆହା
ପ୍ରଭାହୀନ ପ୍ରଭାକର ଅନ୍ଧାର ଅବ୍ଧିରେ ! !
ଏ ଅଧଃପତନ ଅହୋ ଆକାଶୁଁ ପାତାଳେ ! !
କେତେଡ଼ ବିପର୍ଯ୍ୟୟ ଆହା ଦୈବସ୍ତ ଶର୍ବରୀ ! !
ଏ ଦୁର୍ଦ୍ଦଶାପନ୍ନ ଏବେ ମଧ୍ୟାହ୍ନ ମାର୍ତ୍ତଣ୍ଡ
ପ୍ରଚଣ୍ଡ ଯୌବନପ୍ରଭା ଯାର କରୁଥିଲା
ଚରାଚରେ ଓଷ୍ଠାଗତ ପ୍ରାଣ—ନରନାରୀ
ରୁଦ୍ଧ ଶିଳାବିନିର୍ମିତଉଚ୍ଚହର୍ମ୍ୟଦ୍ୱାର
ଅସ୍ଥିର-ଜୀବନ ବିନା-ଅନିଳ ସଲିଳ

ସ୍ୱର୍ଣ୍ଣୀତଳ; କ୍ଷୋଲଜଳ୍ପ ଶାନାଦ ପଶ୍ୱଏଁ
ଅବସ... ଧୂଳିଶାୟୀ; କାଣ୍ଡଜ୍ଞାନଶୂନ୍ୟ
ଫଣୀ କେଜ୍ଜାପୁଚ୍ଛାଶ୍ରୟୀ; ବ୍ୟାଘ୍ରାରତ ତହିଁ
ପକ୍ଷିଗଣ ଶାଖେ ରବହୀନ; ତରୁ ଲତା
ମ୍ରିୟମାଣ, ନତଶିର; ଦଣ୍ଡେ ଦଣ୍ଡେ ଦଣ୍ଡେ
ପ୍ରଜ୍ୱଳତ ଦାବାନଳ, ଝଞ୍ଜଲୌହ ସମ
ମଳୟ ଅନିଳ, ସୁଧାମୟୀ ଜଲଗ୍ରଣି;
ଦ୍ରବୀଣ୍ଡି ପାଷାଣ ଅହୋ—ଅନ୍ୟ ତ କହିବା ?
ଏତେ ପରାକ୍ରମୀ ପ୍ରଭାକର ପ୍ରଭାହୀନ
ଏବେ; ଅବା ପ୍ରଭାତର ନାହିଁ ମନୋହର
ବର୍ଦ୍ଧିଷ୍ଣୁ ନବୀନରୂପ—ତମୋନାଶକାଶ୍ରୀ
ହଟ୍‌ବଲସ୍ପୋପର ପ୍ରାଚକକୁଳରେ ଯାହା
ଦରଶନେ ବିକଶିତା କମଳନୀ ସଙ୍ଗୀ
ସଦ୍ୟାଣା; ଗୁଞ୍ଜରଇ ଅଳି; କାକ ପିକ
ଗାଏଗୀତ ପୁଲକତ ବୀଣାର ଝଙ୍କାରେ;
ମନ୍ଦମାରୁତ ହିଲ୍ଲୋଳେ ନାଚେ ତରୁ ଲତା
ସୁମନ ମଣ୍ଡିତ ଶଙ୍କୁ ଦମ୍ଭାରବେ ଧାଁଏ
ଫୁଲ୍ଲମନେ ଗାଭୀ ତୃଣ ଖଣ୍ଡ ଅନ୍ଧମୁଖେ;
ପ୍ରବେଶ ମାନବ କାର୍ଯ୍ୟକ୍ଷେତ୍ରେ ତୋଷମନେ
ଦାନ ଧ୍ୟାନ ସାଧୁକାର୍ଯ୍ୟ ଆରମ୍ଭି ଉଲ୍ଲାସେ;
ନବ ପ୍ରାଣ ନବଭାବ ସଞ୍ଚରେ ତୌଦିଗେ
ମାଧୁର୍ଯ୍ୟ ଲହରୀ ଖେଳେ ଦଶଦିଗେ ଦୃଶ୍ୟ,

ସ୍ମୃଚନ୍ଦ୍ର ଲଭିଲେ ଯଥା ଅଯୋଧ୍ୟା ଭବନେ ।
ହାଯ୍ୟରେ ସେ ଦୃଶ୍ୟ ଏବେ ନଶାର ସ୍ୱପନ
ଥିଲେହେଁ ତପନ ଚକ୍ରବାଳୋପରେ ବନ୍ଧୁ
ସ୍ଥାନାନ୍ତରେ, ବପଶ୍ଚିତ ବେଗେ; ଅଧୋଗାମୀ
ପଲକେ ପଲକେ ଅହା ଜ୍ୟୋତପ୍ରଭାହୀନ,
ପ୍ରସାର ଚୌଦିଗେ କ୍ଷୀଣ ଥର ଥର କର
ସ୍ପର୍ଶେ ଚଗ୍ଚର ହିର ଆହାରେ ଯେସନ
ବାଳ୍ୟଗନ୍ଧୋପର ବୃଦ୍ଧ ମୋହମାୟାବଶେ
ବୃଦ୍ଧାଏ ଦୁର୍ବଳ ହସ୍ତ ପୁତ୍ର କନ୍ୟା ଶିରେ ।
ବଷାଦ ତରଙ୍ଗଖେଳେ ଦେଖି ରବ-ଅସ୍ତ
ଗମନଉନ୍ମୁଖ; ନଗ୍ନଶା-ସେହ୍ନିକାସୁତ
ଗ୍ରାସେ ସବୁର ବଦନ; ଜୀବନ ବହଙ୍ଗ
କାନ୍ଦେଅର୍ତ୍ତନାଦେ; କାମ-କ୍ରୋଧ-ଲୋଭ-ମୋହ
ଗବାଦ ପଶୁଏ ଯାନ୍ତି ଅଧୋମୁଖେ ଧୀରେ
ଧୀରେ ଗୋଷ୍ଠ ଅଭମୁଖେ; ବବେକ ମାନବ
ଅପହୃତ କାର୍ଯ୍ୟ କ୍ଷେତ୍ରୁ—ମହାଶ୍ରାନ୍ତ କ୍ଲାନ୍ତ
ଘେନ ସ୍ପୃତିରେଖାହୀନ ବଦନମଣ୍ଡଳ
ଅସ୍ମୀଭୂ ସ୍ୱଜନ ଯଥା ସାରୁଁ ଜୀବଲୀଳା ।
ମୃଦ୍ରିତ କମଳନେତ୍ରେ ଶୋଭାର ନଧାନ
ଅଦୃଶ୍ୟ ତପନ ଗୃହୁ ମୁଖ ଶେଷେ ହାୟ
ନୁରବ ନସ୍ତବ୍ଧ ସବେ; ରବଅସ୍ତ କାଳେ
ଅନବଚନୀୟ ଦୃଶ୍ୟ ଶତ ଶତ ଗୁଣେ

ଅଙ୍କେ ପ୍ରୟାସୀ ମୂହିଁ ମୂଢ଼ ବାକ୍ୟହୀନ
ହୋଇ ମତ୍ତ ପିଇ ସଦା ଯାମାଚ୍ଛା ସୁଧାମ
ପ୍ରେମସୁଧା ଶୋକ-ତାପ-ତାପିତ ଜୀବନ ।

———

## ଦୁଃଖ ।

ଅତ ନନ୍ଦିଛଣା ଜଗତେ ଦୁଃଖ
କେବେ କେହୁ ତାଙ୍କୁ ନ ପାଏ ସୁଖ !
ଏହା ତ ଜଗତ ଜାଣଇ ନାହିଁ
ସୁଖ ଦୁଃଖ ଦୁହେଁ ଯାମଳ ଭାଇ ?
ଏକ ସଙ୍ଗେ ଅନ କେବେ ନ ମିଶେ
ଲୁଚକାଳି ବେନ ଖେଳନ୍ତି କ ସେ ?
ଗୋଟିକ ଅଭାବେ କେବେହେଁ ଆଜ
ରକ୍ଷି ନ ପାରବ ଜଗତେ ପ୍ରାଣ ।
ଶୀତ କାଳେ ପାଏ ଉଷ୍ଣ ଅଦର,
ଗ୍ରୀଷ୍ମକାଳେ ଲୋଡ଼ା ଶୀତଳ ନୀର,
ନ ଥିଲେ ରଜନୀ କେବେ'କ ନଭେ
ବଳାଇଣ ଥାନ୍ତେ ପ୍ରୀତ ଦନରେ ?
ଯେଉଁଠାରେ ନାହିଁ ତମ୍ବର ସ୍ଥିତ
ଅଲୋକରେ ତହିଁକେ ବନ୍ଧେ ପ୍ରୀତି ?
ନାଲ ନଭେ କେଉଁ ଶୋଭା ଶଶୀର
କଳା ପାଶେ ଧଳା ସଦା ରୁଚିର ।

ଜାଣି ଅଜାଣା ତ ଜଗତ ହେଲା
ଏତେଜନୁଁ ଚିହ୍ନୁଣା ଦୁଃଖକୁ କଲା ?
ଦୁଃଖ ବିନା ସୁଖ ନୁହଇ ଜ୍ଞାନ
ମାନ ଦଣ୍ଡ ଏକ ଅନ୍ୟର ଜାଣ ।
ଗୃହସ୍ଥ ପ୍ରମାଣ ଦେଖ ଏହାର
ଦୁର୍ଲ୍ଲଭ ଦ୍ରବ୍ୟର ବଡ଼ ଆଦର
ଯାହା ଲାଭେ ଯେତେ ଦୁଃଖ ଘଟଇ
ତାହା ଲାଭେ ତେତେ ମନ ବଳଇ ।
ଏଣୁ କର ଦୁଃଖ ନ ହୁଅ ଦୁଃଖୀ
ତୁମ୍ଭ ବିନା କେହି ନୁହଇ ସୁଖୀ ।
ତୁମ୍ଭକୁ ଯେ ଜନ ସୁଖ ମଣଇ
ଅନନ୍ତ ସୁଖର ଭାଗୀ ହୁଅଇ ।

---

## ଉପେନ୍ଦ୍ର ଭଞ୍ଜ ।

ଭଞ୍ଜ-କୁଳ-କଞ୍ଜ ଉପଇନ୍ଦ୍ର ବୀରବର
ଧନ୍ୟ ଧନ୍ୟ ନୀଳକଣ୍ଠ ନୃପତି ନନ୍ଦନ
ଆବାଲବନିତାବୃଦ୍ଧ ହୃଦୟଚନ୍ଦନ
ଭୂପତି-ସହଚର ମନ୍ତ୍ର ପିକବର ।
ପୂର୍ଣ୍ଣ ଶଶଧର କିବା ମଳୟ ପବନ
ପରି ସୁଧାଜିଣା ତବ ସଙ୍ଗୀତଲହରୀ
ତରଙ୍ଗେ ତରଙ୍ଗେ ନାଗ ହୃଦଗେ ପ୍ରସନ୍ନ

ପ୍ରାସାଦେ କୁଟୀରେ କରେ ଚିତ୍ତ ବିନୋଦନ ।
ଦେଖିଁ ଯେବେ ପଥେ ଘାଟେ ମଳିନ ବସନ
ପିନ୍ଧି ଦୀନହୀନ ତବ ମଧୁରସଙ୍ଗୀତ
ଗାଇ ସର୍ବ ଦୁଃଖ ଭୁଲି ପ୍ରଫୁଲ୍ଲ ବଦନ
ତବ ଗୁଣ ଭାବି ହୁଏ ଚକିତ ବିସ୍ମିତ;
କବିର କୁହୁକ ଧନ୍ୟ ସାର୍ଥକ ଜୀବନ
କର କାଳେ କାଳେ ପର ଦୁଃଖ ବିମୋଚନ ।

---

## ବଣମଲ୍ଲି ।

ଅଯତ୍ନ ସମ୍ଭୂତା, ସତୀ, ସୁଗନ୍ଧଦାୟିନୀ
ବଣମଲ୍ଲି ଶୁଭ୍ରାନନେ, ନିକାଞ୍ଚନ ବନେ
ପ୍ରକୃତି ଜନନୀ କ୍ରୋଡ଼େ ଖେଳନ୍ତ ଫୁଲ୍ଲମନେ
ତପୋବନେ ଶକୁନ୍ତଳା ପରିଏ ଭାମିନୀ ।
ବିକାଶି ସୌରଭ ପ୍ରତି ନିଶା ଆଗମନେ
ଭୂମି ଶେଯେ ଦିବାଗମେ ଶୋଇଲେ ମାନିନୀ
ମଧୁପ ପ୍ରେମିକବର ପ୍ରେମ ଆଲିଙ୍ଗନେ
ନ ବଳାଇ ଚିତ୍ତ କହଁ ସୁଗନ୍ଧଦାୟିନୀ ?
ଜାଗେ କିଲୋ ମନେ ତୋର ଦୁଷ୍ମନ୍ତରାଜନ
ଧୃଷ୍ଟ ଆଚରଣ କିବା ଶ୍ରୀରାମ ନିର୍ଦ୍ଦୟ
ବ୍ୟବହାର ସୀତା ପ୍ରତି; ଦେବକୀ ନନ୍ଦନ
ଭୁଲିଲେ ଯେପରି ରାଧା ବ୍ୟଥିତ ହୃଦୟ ?

ନ ଇଚ୍ଛି କାହାର ପ୍ରେମ ଚେଷ୍ଟା ବି ସୁମନ
ବିଶ୍ୱବ୍ୟାପୀ ପ୍ରେମ ପୂର୍ଣ୍ଣ କରନ୍ତୁ ଆଶୟ ।

---

## ମଧୁକର ।

ଫୁଲେ ଫୁଲେ ଉଡ଼ି ବସି ପୁଲକିତ ମନେ
ବିନ୍ଦୁ ବିନ୍ଦୁ ମକରନ୍ଦ କରି ଆହରଣ
ମଧୁକର, ଆତ୍ମସୁଖ କରି ବିସର୍ଜନ
ସଞ୍ଚୁ ରଚି ମଧୁଚକ୍ର ଲାଗି ପ୍ରାଣପଣେ ।
କରି ଯତ୍ନ ସବୁଶ୍ରମ ହରି ଶଣ୍ଡିଧନ
ଅକାତରେ ସ୍ୱାର୍ଥପର ଅମ୍ଳାନ ବଦନେ
କାଟି ଅଁଶାଲତା ନନ୍ଦେ ଚୌର ଆଚରଣ
କୃତଜ୍ଞତା ଲେଶ ବାରେ ନ ଭାବି ସ୍ୱପନେ ।
ନୁଅନ୍ତା କି ମଧୁଲୋଭ କଦାପି ଭୁବନେ
ସାଧୁ ମଧୁକର ତୁହି ନୋହିଲେ କୃପଣ ?
ତୋ ପଥେ ପଥିକ କେହି ନୋହିଲେ ଜୀବନେ
ଚଞ୍ଚଳା ଅଚଳା ହୋଇ ମର୍ତ୍ତ୍ୟେ କି ସଦନ ?
ଦାନ ଯଜ୍ଞ ସାଧୁକାର୍ଯ୍ୟ କରନ୍ତେ କି ଜନେ
ହେବ କି ଜଗତ କେବେ ସୁଖନିକେତନ ?

---

## ଗୋଲାପ ।

ପୁଷ୍ପରାଜ ହେ ଗୋଲାପ ଶୋଭା ନିକେତନ
ଚତୁର୍ଦ୍ଦିଗେ ବୋଲି ବଡ଼ ବିଖ୍ୟାତ ଭୁବନେ;

ଲବଣୀ ପେଉଁଲାପର କୁଶଳୀ ଯତନେ
ଶ୍ରେଷ୍ଠ ବଡ଼ ରଙ୍ଗ ପୀତ ବିବିଧ ବରଣ
ଧରି ବହୁରୂପୀ ତୁହି ଧନ୍ୟ ତୋ ଜୀବନ
ଶୁଣା ନ ଥିଲା ତୋ ନାମ କେବେ ବୃନ୍ଦାବନେ
କଭୁ ନ ଥିଲୁ ବା ସୀତା ଚତ୍ର ବିନୋଦନ
ଯବନ ଅଳସ୍ୟୁ ଆସେ ଭାରତ ସଦନେ
କିପରି ଲଭିଲୁ ତୁହି ରାଜସିଂହାସନ ?
ଧନ୍ୟ ତୋ ଜୀବନ, ଧନ୍ୟ ଗୁଣରତ୍ନଧାନ
ବୃଥାକର ହେଲେ ତୁହି ଶାସ୍ତ୍ରୀୟ ବଚନ
ହିନ୍ଦୁ ଗୃହେ ଲଭି କଲୁ ଏମନ୍ତ ସମ୍ମାନ
ଦେଖାଇଲୁ ଯହିଁ ତହିଁ ପୂଜ୍ୟ ଗୁଣୀଜନ
ଲୋପ କର ଧର୍ମାଧର୍ମ ପରାପର ଜ୍ଞାନ ।

---

## ୰ ରାୟ ନନ୍ଦକିଶୋର ଦାସ ବାହାଦୂର ।

ହାୟରେ କ୍ରନ୍ଦନ ଆଜ ଉତ୍କଳ ଜନନୀ ।
ଅକାଳେ ଗ୍ରାସିଲା ରାହୁ ତବ ଦିନମଣି । ୧ ।
ଅକସ୍ମାତେ ଦଶଦିଗ ଘୋର ତମାଚ୍ଛନ୍ନ ।
ହାହାକାର ନାଦେ ବହେ ଭ୍ରମପ୍ରଭଞ୍ଜନ । ୨ ।
ଅନର୍ଗଳ ଅଶ୍ରୁଧାରା କରେ ଧରାସିକ୍ତ ।
ସ୍ୱାତଯୁକ୍ତ ଅମାନିଶା ଯେହ୍ନେ ଉପନୀତ । ୩ ।
ପର୍ବତ ଆକାରେ ଉଠେ ଶୋକର ତରଙ୍ଗ ।
ଛଟପଟ ନରବଧ ଜୀବନ ବିହଙ୍ଗ । ୪ ।

ଉତ୍କଳବିଷୟେ ପୂର୍ଣ୍ଣ ଯେତେ ଗୋପପୁର ।
ଶ୍ରେଷ୍ଠ ଯାହିଁ ନନ୍ଦସୁତ ଶ୍ରୀନନ୍ଦକିଶୋର । ୬ ।
ଅକ୍ରୂର ନାମରେ ରଥେ କ୍ରୂର ହୋଇବିଧି ।
ନେଲୁ ଏଦୁଃସହ ଦୁଃଖ ହରି ଦୁଃଖନିଧି । ୭ ।
ପୁତ୍ର ଶୋକେ କାନ୍ଦେ ଚିରଦୁଃଖିନୀ ଓଡ଼ଶା ।
ଯଶୋଦାଙ୍କୁ ବଳି ଘୋର ଦୁଃଖରେ ବିବଶା । ୭ ।
କାନ୍ଦନ୍ତି ସୁଦାମ ଦାମ ଶ୍ରୀମଧୁସୂଦନ ।
କେତେକେତେ ପ୍ରିୟଜନ କେ କରିବ ଗଣନ । ୮ ।
କାନ୍ଦୁଛନ୍ତି ଗୋପାଙ୍ଗନା ପର ଚିରୁଲତା ।
ମାଧବୀ, ଚମ୍ପକଲତା, ସୁଦେବୀ ଲଳିତା । ୯ ।
ବୃନ୍ଦା ଚନ୍ଦ୍ରାବଳୀ, ଚିତ୍ରା, ରମ୍ୟା, ଇନ୍ଦୁରେଖା ।
ରଙ୍ଗଦେବୀ, ତୁଙ୍ଗବିଦ୍ୟା, ସୁନାସ୍ତୀ, ବିଶାଖା । ୧୦ ।
ଅଧୋମୁଖେ ଅନର୍ଗଳ ଅଶ୍ରୁବିସର୍ଜନ ।
କରନ୍ତି ନୀରବେ ସର୍ବେ, ହାୟରେ ଯେସନ୍ତ ।୧୧।
ସ୍ୱରସ ତରୁର ଅଙ୍ଗେ ହେଲେ ଶସ୍ତ୍ରଘାତ ।
ରସ ସ୍ରୋତେ ଧସ୍ତବକ୍ଷ ହୁଅଇ ପ୍ଲାବିତ ।୧୨।
ମଥୁରାବାସୀଙ୍କୁ ବଳି ଦୁଃଖ ଘୋରତର ।
ହେବାକୁ ବଳିଲା ମନ କେମନ୍ତେ ତୋହର ।୧୩।
ଅବେ ନିଦାରୁଣ ବିଧି ? ତୋହର ବାସନା ।
ଦେବତା ଦାନବ ନରେ ସୁଦ୍ଧା ଅଜଣା ।୧୪।
ଗୋପରୁ ମଥୁରାପୁର ନ ଥିଲା ସୁଦୂର ।
ରଖିଲୁ ନନ୍ଦଙ୍କୁ ଯହିଁ ଅଗମ୍ୟ ସେପୁର ।୧୫।

ଆଶା ନାହିଁ ଲଭିବାକୁ ପ୍ରଶଂସ ମେଲଣି ।
ଯେତେଦିନ ଯାଏ ଥିବ ଶରୀରେ ଜୀବନ । ୧୬ ।
ଆଉ କି କରିବ କେବେ ନୟନ ରଞ୍ଜନ ।
ନନ୍ଦସୁତ ପରି ନନ୍ଦ ପ୍ରସନ୍ନ ବଦନ ? ।୧୭।
କରିବ ଶ୍ରୁତିରେ ଆଉ ପୀୟୂଷ ସେଚନ ।
ସାରଗର୍ଭ ସୁମଧୁର ସରସ ବଚନ ? ।୧୮।
ଓଡ଼ିଶା ଦୁଃଖରେ ଆଉ ହେବ କି କାତର ।
ସୁଗମ୍ଭୀର ସୁପ୍ରଶସ୍ତ ହୃଦୟ ନନ୍ଦର ? ।୧୯।
ହେବ କି ପ୍ରତିଭାଶାଳୀ ମସ୍ତିଷ୍କ ଚାଳିତ ।
ସାଧିବାକୁ ଚିରଦୁଃଖୀ ଓଡ଼ିଆଙ୍କ ହିତ ? ।୨୦।
କାର୍ଯ୍ୟକୁଶଳିତା ପୁଣି ବୁଦ୍ଧି ବିଚକ୍ଷଣ ।
କରିବ କି ଓଡ଼ିଆଙ୍କ କଳଙ୍କ ମୋଚନ ? ।୨୧।
ରଖି ରାଜାଠେକ କର ପ୍ରଜାଦୁଃଖ ଦୂର ।
ଯହିଁ ତହିଁ ରଚିବ କି ନନ୍ଦ ଶାନ୍ତିପୁର ? ।୨୨।
ନ ମାରିଣ ସାପ କିମ୍ବା ନ ଭାଙ୍ଗିଣ ବାଡ଼ି ।
ଦେବ କି କୌଶଳେ ନନ୍ଦ ଆଉ ବିପଦ ଘଉଡ଼ି ? ।୨୩।
କେମନ୍ତେ ହରିଲୁ ହାୟ ନିଦାରୁଣ ବିଧି ।
ଶାନ୍ତି-ପ୍ରେମ ଅବତାର କରୁଣା-ବାରିଧି ? ।୨୪।
କେମନ୍ତେ କାଟିଲୁ ବୃନ୍ତ ସୌରଭ ବିସ୍ତାର ।
କଳ୍ପବେଳେ ଗନ୍ଧରାଜ ସୁମନ ପ୍ରବର ? ।୨୫।
ଭୋଗଇଁ କି ମଧୁକର କିଂଶୁକ ସୁମନ ।
ଦେଖି ଯାହା କାନ୍ତି ଛଟା ଚକିତ ଭୁବନ ? ।୨୬।

ସୁବର୍ଣ୍ଣ କେତକୀ ଚମ୍ପା ଅତଉଗ୍ରବାସ ।
ଭୋଗିବାକୁ ମଧୁକର ଯାଏକି ତା ପାଶ ? ।୨୭।
ତୋଷିବେ ପାରଇ ତେତେ ମନ ଉପବନ ।
ଯେମନ ଗନ୍ଧରାଜଜନା ସକଳ ସୁଜନ- ।୨୮।
ଜାଣ ଜୁଇ କଅ ଚମ୍ପା ଜବା ସେଫାଳିକା ।
ଟଗର ମାଧବୀ ଗୁରୁ ସୁଗନ୍ଧ ମଲ୍ଲିକାଂ? ।୨୯।
ବଳପର ଗନ୍ଧରାଜ ନୁହେ ଅତଦାନୀ ।
ଅବା ଦୁର୍ଯ୍ୟୋଧନ ପର ବଡ ଅଭିମାନୀ ।୩୦।
ବଦ୍ୟୁତ୍ ଶମ୍ଭା ଚଦନ୍ତାଇ ନ କରେ ଚକତ ।
ଆତିଶଯ୍ୟହୀନ ଗୁଣେ ସକଳେ ଅଦୃତ ।୩୧।
ନାଉଶୀତଉଷ୍ଣ ଗୁଣେ ନନ୍ଦ ବିଭୂଷିତ ।
ବସନ୍ତ ଅନଳ ପର ତୋଷୁଥିଲ ଚିତ୍ତ ।୩୨।
ଅକାଳେ ହାୟରେ ହର ସେ ସାମ୍ୟ ମୂରତ ।
ଅଜିଲୁ ଜଗତେ ବଧି ଏ କେଉଁ ନୀରତ ? ।୩୩।
କ କହବ ବଧି ଆଉ ନ ସ୍ପୁରେ ବଚନ ।
ଯାହା ତୋର ଇଚ୍ଛା ତାହା କର ତୈ ସାଧନ ।୩୪।
ଘଟିବାଉ ଯାହା ଥିଲା ନ ହୁଅନ୍ତା ଅନ ।
ଶେଷରେ ମାଗୁଛି ମୋର ଯେନ ନବେଦନ ।୩୫।
ଦୁଃଖିନୀ ଓଡ଼ିଶାସୁତେ ଅତି ଦୀନହୀନ ।
ସୁଦୃଷ୍ଟି କରନ୍ତୁ ସଦା ଦେବ ଜନାର୍ଦ୍ଦନ ।୩୬।
ଶାନ୍ତିପୁରେ ଶାନ୍ତିପ୍ରିୟ ନନ୍ଦ ଲଭୁ ଶାନ୍ତି ।
ବଭୁପାଦେ ରହୁ ସଦା ମୋର ମୂଢ଼ମତ ।୩୭।

# ଜୀବନ-ସଂଗ୍ରାମ ।

ଅମଳ କମଳ ମୁଖେ ଚାରୁ ଚନ୍ଦ୍ରହାସ
କ ଭାବନା ଭାବ ଶିଶୁ କରୁଛ ପ୍ରକାଶ ?
ଦେଖ ପରା ଚାରିଆଡ଼େ ତରୁଲତାଗଣ
ହରିତ ବରଣ ଅତି ନୟନରଞ୍ଜନ,
ନାନାଜାତି ଫୁଲ ନାନା ରଙ୍ଗରେ ରଞ୍ଜିତ,
ପବନରେ ଦଶଦିଗ କରେ ଆମୋଦିତ,
ଖଗ ମୃଗ ହସ୍ତୀ ଅଶ୍ୱ ବିହଙ୍ଗମ ଗଣ
ନାଚେ କେବା ଗାଏ କେବା କରେ ବିଚରଣ ?
ଚାରିଆଡ଼େ ଦେଖ ପରା ସହାସ୍ୟ ବଦନ ?
ଶ୍ରବଣ ଶୀତଳ କରେ ପୀୟୂଷ ବଚନ ?
ସାଦରେ ସକଳେ ପରା କରେ ସମ୍ଭାଷଣ ?
ଭାବ ପରା ମନୋରମ ତେଣୁ ଏ ଭୁବନ ?
ନାହିଁ ତବ କାମ କ୍ରୋଧ ଜ୍ଞାନ ଆତ୍ମପର
ଶାରଦ ଆକାଶ ପରି ନିର୍ମଳ ଅନ୍ତର;
ଦେବଭାବ ଅଛି ଯେଣୁ ମନେ ବିଦ୍ୟମାନ ।
ଜଗତକୁ ସୁଧାମୟ କରୁଅଛ ଜ୍ଞାନ;
ମଣୁଅଛ ଯାହା ତୁମ୍ଭେ ଆଗାର ସୁଖର
ଅଚିରେ ଦେଖିବ ତାହା କେଡ଼େ ଭୟଙ୍କର
ରଣକ୍ଷେତ୍ର, ଯହିଁ ସଦା ତୁମୁଳ ସଂଗ୍ରାମ,
ନିରବେ ନସ୍ତବ୍ଧେ ଚଳେ ନ ଥାଇ ବିରାମ;
ଯେଉଁ ରଣେ ତରୁଲତା ପଶୁ ପକ୍ଷୀ ନର ।
ଜାତି କୁଳ ରକ୍ଷାପାଇଁ ଯୁଝନ୍ତି ନିରନ୍ତର,

ତରୁସଙ୍ଗେ ତରୁ ପୁଣି ନରସଙ୍ଗେ ନର
ନିଜ ନିଜ ସ୍ୱାର୍ଥ ପାଇଁ ଯୁଦ୍ଧେ ତତ୍ପର,
ଯେତେ ଁ ରଣେ ଜାଇ ଜୂଇ କେତକୀ ମାଲତୀ
ସୌରଭ ବିସ୍ତାର କରେ ମନୋରମ ଅତି,
ଉଜ୍ଜ୍ୱଳଇ ଦଶଦିଗ ଲୋହିତ ପଲାଶ
ଧବଳଇ ଧରାତଳ ଶାରଦୀଯ୍ କାଶ,
ଇନ୍ଦ୍ରଧନୁ ଜିଣି ନାନା ରଙ୍ଗରେ ରଞ୍ଜିତ
ପୁଚ୍ଛ ଟେକି ନାଚେ କେକୀ ମୋହି ଜନଚିତ୍ତ,
ପଞ୍ଚମସ୍ୱରରେ କରି କୋକିଳ କୂଜନ
କରଇ ଶ୍ରୁତିରେ ସୁଧାଗ୍ନିଶି ବରଷଣ ।
ଏହିପରି ଯେ ଯା' ଭାବେ ଯୁଦ୍ଧେ କରନ୍ତିରେ
ପ୍ରତିଦ୍ୱନ୍ଦ୍ୱୀ ନୁହେ କେହି ପ୍ରକାଶ୍ୟେ କାହାର ।
ସାଧିବାକୁ ନିଜ ନିଜ ନିଗୂଢ଼ କାମନା
ଯାହାର ଯା' ଅଛି ତାହା କରୁଛି ଗୁଳନା
ଏ ବିଚିତ୍ର ରଣରଙ୍ଗ ବର୍ଣ୍ଣନା ଅତୀତ
ସହଜରେ ରଣବୋଲି ନୁହଇ ପ୍ରତୀତ
ନାହିଁ ଏଥି ରଣବାଦ୍ୟ ଅସ୍ତ୍ରର ଝନ୍ ଝନା
ବିନା ରକ୍ତପାତେ ଜନ୍ମେ ଅସୀମ ବେଦନା
ନାହିଁ ପ୍ରୟୋଜନ ଏଥି ଅନ୍ୟ ଅସ୍ତ୍ର ଶସ୍ତ୍ର
ବଳ ଯାର ଜୟ ତାରୁ ଏଥି ମୂଳମନ୍ତ୍ର ।
ବୁଦ୍ଧି-ଦେହବଳ ଯାର ଜିଣଇ ସେ ରଣ,
ଅଚିରେ ଦୁର୍ବଳ ଯାଏ ଶମନ ସଦନ ।

ସ୍ଥାବର ଜଙ୍ଗମ କେତେ ହେଲେଣି ନଷ୍ଟାଂଶ
କହ ପାପର ବଳେ ଆଉ କେତେ ହେବେ ଧ୍ୱଂସ ?
ଅନନ୍ତ ସୁଖର ଯେବା ହୋଇବ ପ୍ରୟାସୀ
ଏ ରଣେ ଉଚିତ ତାର ହୋଇବା ଉଦାସୀ ।
ତୁମ୍ଭ ପରି ଶିଶୁ ଯାର ନିର୍ମଳ ଅନ୍ତର
ଅନନ୍ତ ସୁଖର ଭାଗୀ ଅଟେ ସେହି ନର ।
ସ୍ୱାର୍ଥପର ଜଗତରେ ଅଦ୍ଭୁତ ସେ ଜନ
ନିଜସ୍ୱାର୍ଥ କରିଅଛି ଯେହୁ ବିସର୍ଜନ ।



ଝିଂଝିଟ ଖମ୍ବାଜ—ଠୁଂରୀ ।
" ସଖି ଅଖିଠାରୁ" ଅବା
"କତକାଳ ପରେ ବଲ ଭାରତରେ" ବୃତ୍ତରେ ।

ପୁନ ନିବେଦନ ଅହେ ବନ୍ଧୁଗଣ
ବିଭୁଗୁଣ ଆସ କରିବା କୀର୍ତ୍ତନ ! ଘୋଷା ।
ଅଚିନ୍ତ୍ୟ ଅବ୍ୟକ୍ତ ମଙ୍ଗଲ ନିଧାନ
ଅବ୍ୟୟ ଅନନ୍ତ ଦେବ ଜନାର୍ଦ୍ଦନ । ୧ ।
ଦୟାର ସାଗର ବ୍ରହ୍ମାଣ୍ଡର ପତି
ଅନାଥର ନାଥ ଅଗତିର ଗତି । ୨ ।
ଉତ୍କଳର ପ୍ରତି ହେଲେଣି ପ୍ରସନ୍ନ
ଦେଖ ଶୁଭଦୃଷ୍ଟି ଦେଲଣି ଦର୍ଶନ । ୩ ।
ଜାତୀୟ ସାହିତ୍ୟ ଜାତୀୟ ଜୀବନ
ଆଦରକଲେଣି ଉତ୍କଳ ନନ୍ଦନ । ୪ ।

ଉଠ ଭାଇ ଉଠ ଧର ଏହି ଭାବ
ସୌଭାଗ୍ୟରବିର ଦର୍ଶନ ମିଳିବ ।। ୫ ।

---

"ଆସ୨ ଯିବପରି ଡାକୁଛି ମୁରଲୀଧରୀ"
ବୃତ୍ତରେ ।

ଆସ ଆସ ବନ୍ଧୁ ଗଣ    ହୋଇ ଏକମନ ପ୍ରାଣ
ଭକ୍ତି ପୁଷ୍ପାଞ୍ଜଳିଦେଇ ପୂଜିବା ହେ ଜନାର୍ଦ୍ଦନ । ୬ ।
ଶୋକ ପାପ ତାପହର    ହରି ପ୍ରେମ ପାରାବାର
ଅଗତିର ଗତି ଦେବ ବିଶ୍ୱପତି ଦୁଃଖୀ-ଧନ ।
ଲଭି ତାଙ୍କ ଦୟାକର    ଦୁଃଖନିଶା ହେବ ଦୂର
ହେବ ସୁପ୍ରଭାତ ଦେବ ଭାଗ୍ୟ-ରବି ଦରଶନ ।
ଉଷା ଶୁଭ ଆଗମନ    ଦିଶିଲାଣି ସୁଲକ୍ଷଣ
ଜାତିଭାବ ଜାତିପ୍ରେମ ହୋଇଲାଣି ଉଦ୍ଦୀପନ ।
ଜାତିପ୍ରେମ ସୁଧାପାନେ    ମତ୍ତହୋଇ ଏକମନେ
ଆସ ଆସ କରିବା ହେ ତାଙ୍କ ଗୁଣ ସଂକୀର୍ତ୍ତନ ।

---